# ସର୍ବେଘାମ୍

## ସରକାରୀ ମହାବିଦ୍ୟାଳୟ, ରାଉରକେଲା

### ମୁଖପତ୍ର

ଷଡ଼ବିଂଶ ସଂଖ୍ୟା

୧୯୯୦ – ୯୧




ଅଧ୍ୟକ୍ଷ

ପ୍ରଫେସର ଗଣେଶ୍ୱର ଦାସ

ସଂପାଦନା ମଣ୍ଡଳୀ

ଶ୍ରୀ ନାରାୟଣ ଚନ୍ଦ୍ର ନାୟକ
ଶ୍ରୀମତୀ ଜ୍ୟୋତ୍ସ୍ନାରାଣୀ ପଟ୍ଟନାୟକ
ଶ୍ରୀ କୁଳଜିତ୍ ସିଂହ
ଡଃ (ଶ୍ରୀମତୀ) ବିଦ୍ୟାବତୀ ମିଶ୍ର
ଶ୍ରୀ ଦିଗାମ୍ବର ସାହୁ
ଡକ୍ଟର ଶ୍ରୀଚରଣ ମହାନ୍ତି
ମିସ୍ ଅଞ୍ଜନା ଚକ୍ରବର୍ତ୍ତୀ

Digitized by PPRACHIN, SOA

# THE SARVESHAM

## VERNMENT COLLEGE, ROURKELA
## MAGAZINE

●

*Volume - XXVI*

**1990-91**

●

Principal

Prof. Ganeswar Das

●


**EDITORIAL BOARD**

Sri N. C. Nayak
Smt. J. R. Patnaik
Sri K. Singh
Dr. (Smt.) B. Mishra
Sri D. Sahu
Dr. Sricharan Mohanty
Ms. A. Chakravorty


●

Cover Design : Kuljit Singh

●


Printed at

SUCHITRA PRINTERS

Bisra Road, ( Near Uma Talkies )

Rourkela - 11


Digitized by PPRACHIN, SOA

# ସୂଚୀପତ୍ର

## – ଓଡ଼ିଆ ବିଭାଗ –



Digitized by PPRACHIN, SOA

# THE SARVESHAM

## GOVERNMENT COLLEGE, ROURKELA
## MAGAZINE

●

*Volume - XXVI*

**1990-91**

●

Principal

Prof. Ganeswar Das

●

**EDITORIAL BOARD**

Sri N. C. Nayak
Smt. J. R. Patnaik
Sri K. Singh
Dr. (Smt.) B. Mishra
Sri D. Sahu
Dr. Sricharan Mohanty
Ms. A. Chakravorty

●

**Cover Design :** Kuljit Singh

●

**Printed at**

SUCHITRA PRINTERS

**Bisra Road, ( Near Uma Talkies )**

**Rourkela - 11**

Digitized by PPRACHIN, SOA

# • ସୂଚୀପତ୍ର •

## – ଓଡ଼ିଆ ବିଭାଗ –



Digitized by PPRACHIN, SOA

## - हिन्दी विभाग -



## - ENGLISH SECTION -



Digitized by PPRACHIN, SOA

# The Glories of Our Institution

(a) Best Allround Student.

Ms. Mona Mohanty, +3 Arts III

(b) Rourkela Steel Plant Prize winners-

(1) Best Student ( Academic ) - Sri Alok Das

(2) Best Sports Woman - Ms. Mamata Patnaik

(3) Best in Extra - Curricular activities - Sri Kuisik Chattarjee

(c) The three toppers of Sambalpur University
The +3 III English ( Hons ) 1989-90

(1) Nandita Mukherjee

(2) Mousumi Chakravorty

(3) Amarjeet Kaur Sandhu

(d) First in Inter College, Oriya Debate Compitation held in Ispat College Rkl. for the Celebration of Republic Day :- Ms. Puspanjali Mohapatra, +2 Sc. 1st year.

(e) First in Inter College English Debate Compitation Organised by the College Union — Ms. Suparna Behura, +2 Sc. II

(f) Second in All Orissa English Essay Compitation. Organised by CHSE, Orissa—Sri Lalit Mohan Murmu, +2 Science I.

(g) Best N. C. C. Cadet, 1990-91
Sri Suresh Ch. Behura.

(h) Ms. Mamata Patnaik - holding University records in 800 mt., 400 mt. and 200 mt. Race

(i) Ms. Pranati Behera holds University records in high Jump and shortput.

(j) Mr Shamik Das, represented Sambalpur University in Inter University Cricket Match.

(k) Mr. Sanjay Kumar Pradhan represented All India Inter University Atheletic Meet.

Digitized by PPRACHIN, SOA

# OUR PRINCIPALS

1. Sri P. K. Das, M Sc. A. I. C — From 16-1-61 to 6-3-1963
2. Sri C. S. Murty, M Sc. B Ed. A. I. C. — From 7-3-63 to 31-1-1967
3. Sri K. P Nigam, M. A. — From 3-3-67 to 25-6-1967
4. Sri B. N. Mishra M. A. — From 25-7-67 to 1-6-1968
5. Sri K. M. Senapati, M. Sc. — From 3-6-68 to 17-8-1969
6. Sri J. K. Mishra, M. A. A. M. — From 18-8-69 to 24-6-1970
7. Late S. P. Mishra, M. Sc. — From 25-6-70 to 4-7-1972
8. Major R. C. Mohanty, M. A. — Form 14-8-72 to 9-9-1977
9. Sri B. N. Mishra M. A. — From 19-9-77 to 31-8-1979
10. Sri H. P. Mohanty, M. A. — From 1-9-79 to 26-11-1980
11. Sri B. C. Roy, M. Sc. — From 26-11-80 to 26-3-1984
12. Sri G. Das, M. A. — From 4-4-84

Digitized by PPRACHIN, SOA

 ସମ୍ପାଦକୀୟ

# ପ୍ରକାଶନ ସଂକଟ

ସ୍ରଷ୍ଟାର ସୃଷ୍ଟି ଆତ୍ମ-ପ୍ରକାଶ କଲାପରେ ତା'ର ମର୍ମ ସମାଜର ପାଠକ ପାଠିକା ଅନୁଭବ କରନ୍ତି । ପୁରାତନ କାଳରେ ଚର୍ଚ୍ଚା ମାଧ୍ୟମରେ ସୃଷ୍ଟି ପ୍ରସାରିତ ଓ ଆଲୋଚିତ ହେଉଥିଲା, ସମ୍ପ୍ରତି ସେ ପ୍ରକାର ସୁଯୋଗ ନାହିଁ, ସମୟ ମଧ୍ୟ ନାହିଁ । ଏଣୁ ସୃଷ୍ଟି ପ୍ରସାରଣର ମୁଖ୍ୟ ମାଧ୍ୟମ ମୁଦ୍ରଣ ଓ ପ୍ରକାଶନ । ଏବେ ଲକ୍ଷ୍ୟ କରଯାଉଛି ଜନ ସାଧାରଣଙ୍କ ପଠନ ପ୍ରବୃତ୍ତି କ୍ରମଶଃ କମି କମି ଆସୁଅଛି । ଏହାର ବିବିଧ କାରଣ ଥାଇପାରେ । ଆକାଶବାଣୀ ଓ ଦୂର ଦର୍ଶନର ପ୍ରସାର ଫଳରେ ସାଧାରଣ ମଣିଷ ସମୟ ବିତାଇବା ପାଇଁ ଆଉ ପଠନ ଉପରେ ନିର୍ଭର ନ କରି ଦର୍ଶନ ତଥା ଶ୍ରବଣରେ ସନ୍ତୁଷ୍ଟ ରହି ଚାଲିଛି । ଏଣୁ ଜନ ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଆନୁପାତିକ ହାରରେ ପାଠକ ପାଠିକା ବୃଦ୍ଧି ପାଇପାରୁ ନାହାନ୍ତି, ବରଂ ହ୍ରାସ ପାଇ ଚାଲିଛନ୍ତି । ଅନ୍ୟ ପକ୍ଷରେ ମୁଦ୍ରଣ ନିମନ୍ତେ ଯେଉଁ ଦ୍ରବ୍ୟ ଓ ପଦ୍ଧତି ଆବଶ୍ୟକ, ତାହାର ମୂଲ୍ୟ ଅସମ୍ଭବ ପ୍ରକାର ବଢ଼ି ଚାଲିଛି । ଚାହିଦା ହ୍ରାସ ଓ ଉତ୍ପାଦନ ଖର୍ଚ୍ଚ ବୃଦ୍ଧିରେ ଫଳ ଯାହା ହେବା କଥା ତାହା ହୋଇ ଚାଲିଛି ।

ଏବେ ସାଧାରଣ ସ୍ରଷ୍ଟାମାନଙ୍କର ସୃଷ୍ଟି ଆତ୍ମ ପ୍ରକାଶ ପାଇଁ ମାଧ୍ୟମ ସୀମିତ । ଯେ ପ୍ରକାର ମାଧ୍ୟମ ଏକମାତ୍ର ହିଁ ଗଣ ମାଧ୍ୟମ । ଏ ଗଣ ମାଧ୍ୟମରେ ସାଧାରଣ ଲେଖକ ବା ନୂଆ ଲେଖକ ସହଜରେ ସ୍ଥାନ ପାଇପାରୁ ନାହାନ୍ତି । ସମାଜର ଅନ୍ୟକ୍ଷେତ୍ରରେ ଧରାଧରି ପ୍ରିୟାପ୍ରୀତି ତୋଷଣ ପରି ଲେଖା ପ୍ରକାଶ କ୍ଷେତ୍ରରେ ତାହା କମ୍ ଅସୁବିଧା ସୃଷ୍ଟି କରୁନାହିଁ ।

ସମସ୍ତ ଲେଖକ ବ୍ୟକ୍ତିଗତ ଭାବରେ ନିଜ ସୃଷ୍ଟିକୁ ପ୍ରକାଶ କରିବା ପାଇଁ ସମର୍ଥ ନୁହନ୍ତି । ବ୍ୟକ୍ତିଗତ ପ୍ରକାଶନ ମଧ୍ୟ ସବୁ କ୍ଷେତ୍ରରେ ସୁବିଧାଜନକ ନୁହେଁ । ପ୍ରଥମତଃ ବ୍ୟୟ ବହୁଳତା, ଦ୍ୱିତୀୟରେ ପ୍ରସାରଣ ଅସୁବିଧା । ଓଡ଼ିଶାରେ ଯେଉଁ ପୁସ୍ତକ ବ୍ୟବସାୟୀ ଓ ପ୍ରକାଶନ ସଂସ୍ଥା ଅଛନ୍ତି, ସେମାନେ କୌଣସି ସମୟରେ ବ୍ୟକ୍ତିଗତ ପ୍ରକାଶନକୁ ସାହାଯ୍ୟ କରନ୍ତି ନାହିଁ, ଅର୍ଥ, କ୍ଷମତାର ସୁବିଧା ଲାଭର ଆଶା ନଥିଲେ ପ୍ରକାଶନ ପାଇଁ ନଜର ଦିଅନ୍ତି ନାହିଁ, ବରଂ ହତାଶ କରି କରି ଚାଲନ୍ତି ।

ଓଡ଼ିଶାରେ ପୁସ୍ତକ ଲେଖି ରୟାଲଟି ବା ରାଜଭାଗ ପାଇବା ଆଶା କରିବା ବୃଥା । ବର୍ତ୍ତମାନ ପୁସ୍ତକ ପ୍ରକାଶନ ପାଇଁ ପ୍ରକାଶକମାନେ ବ୍ୟକ୍ତି ଅନୁପାତରେ ମୋଟା ଅଙ୍କର ଚାନ୍ଦା ଆଦାୟ କରିବାରେ ଲାଗିଛନ୍ତି ।

ଏହା କ'ଣ ବୌଦ୍ଧିକ ଅବକ୍ଷୟର ସୂଚନା ? ? ?

ଦୋଳ ପୂର୍ଣ୍ଣିମା—୧୯୯୧
ରାଉରକେଲା—୪

ଡକ୍ଟର ଶ୍ରୀଚରଣ ମହାନ୍ତି

Digitized by PPRACHIN, SOA

ଓଡ଼ିଆ ଭାଷାର ପ୍ରଥମ ମହିଳା କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିବା

ବିଶିଷ୍ଟ ଗାଳ୍ପିକା **ବୀଣାପାଣି ମହାନ୍ତିଙ୍କୁ**

ରାଉରକେଲା ସରକାରୀ ମହାବିଦ୍ୟାଳୟ ର ଆନ୍ତରିକ

## ଅ ଭି ନ ନ୍ଦ ନ

ବିଶିଷ୍ଟ ଔପନ୍ୟାସିକ, ସମାଲୋଚକ, ରାଜନୀତିଜ୍ଞ ତଥା ସାମ୍ବାଦିକ

କଥାକାର **ସୁରେନ୍ଦ୍ର ମହାନ୍ତିଙ୍କୁ**

ରାଉରକେଲା ସରକାରୀ ମହାବିଦ୍ୟାଳୟର

## ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ।।।

ସମ୍ପାଦନା ମଣ୍ଡଳୀ;

## ଧନ୍ୟବାଦ ଓ କୃତଜ୍ଞତା

ପତ୍ରିକାର ପ୍ରକାଶନ ଦିଗରେ ବିଶେଷ ସାହାଯ୍ୟ ଓ ପ୍ରେରଣା ପ୍ରଦାନ କରି-ଥିବାରୁ ଅଧ୍ୟକ୍ଷ ପ୍ରଫେସର ଗଣେଶ୍ୱର ଦାସ ଓ ଉପାଧ୍ୟକ୍ଷ ଡ଼କ୍ଟର ଅଶୋକ କୁମାର ଦାସଙ୍କୁ କୃତଜ୍ଞତା ଜଣାଉଛୁ ।

ପତ୍ରିକାକୁ ସର୍ବାଙ୍ଗସୁନ୍ଦର କରିବାପାଇଁ ଯେଉଁ ଅଧ୍ୟାପକ ଅଧ୍ୟାପିକା ବନ୍ଧୁମାନେ ସହଯୋଗ କରିଛନ୍ତି ସେମାନଙ୍କୁ ଧନ୍ୟବାଦ ଜଣାଉଅଛୁ । ଅନେକ ପ୍ରକାଶ ଉପଯୋଗୀ ଲେଖା ସ୍ଥାନ ଅଭାବରୁ ପ୍ରକାଶ ପାଇପାରି ନ ଥିବାରୁ ଦୁଃଖିତ ।

ପତ୍ରିକାର ପ୍ରଚ୍ଛଦ ଅଙ୍କନ କରିଥିବାରୁ ଅଧ୍ୟାପକ ଶ୍ରୀ କୁଳଜିତ୍ ସିଂହଙ୍କୁ ଧନ୍ୟବାଦ ଓ କୃତଜ୍ଞତା ଜଣାଉଛୁ । ସର୍ବୋପରି ପତ୍ରିକାର ଆତ୍ମପ୍ରକାଶ ଦିଗରେ ସୁଚିତ୍ରା ପ୍ରିଣ୍ଟର୍ସ ର ପରିଚାଳକ ଓ କର୍ମୀମାନେ ଅଶେଷ ଶ୍ରମ ସ୍ୱୀକାର କରି ଯଥା ସମୟରେ ଆଲୋକକୁ ଆଣି ପାରିଥିବାରୁ ଅଶେଷ ଧନ୍ୟବାଦ ।

ସମ୍ପାଦନା ମଣ୍ଡଳୀ

Digitized by PPRACHIN, SOA

# ଅନେକ ଅନୁଭୂତ..............ସାମାନ୍ୟ ଅଭିବ୍ୟକ୍ତି ।।

ଶ୍ରୀ ଗଣେଶ୍ୱର ଦାସ
ଅଧ୍ୟକ୍ଷ

ସାତଟି ବରଷ ଗଡରକେଲରେ ରହଣି ଏବଂ ସରକାରୀ ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱ ବହନ କରିବାର ସମୟ ସରି ଆସିଲଣି । ଆଶଂକାର ଗଭୀର ଅନ୍ଧକାର ଭିତରେ ଗଡରକେଲକୁ ଆସି ଏ ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱ ନେଇଥିଲି । ସହକର୍ମୀ, ଛାତ୍ର–ଛାତ୍ରୀ, କର୍ମଚାରୀବୃନ୍ଦ ତଥା ମହାବିଦ୍ୟାଳୟର ପରିଚାଳନାଗତ ଶାସନ ସହିତ ଯେଉଁ ନିବିଡ ସଂପର୍କ ଅଥବା ମାୟା ସୃଷ୍ଟି ହୋଇଯାଇଛି ସେ ସବୁ ଛାଡ଼ି ଯିବାର ଦୁଃଖ ବି ଏକ ପ୍ରକାର ଅନ୍ଧକାର ସୃଷ୍ଟି କଲଣି । ଯେଉଁ ମାନସିକ ଅନ୍ଧକାର ଭିତରେ ଏ ମହାବିଦ୍ୟାଳୟର ଦାୟିତ୍ୱ ନେଇଥିଲି, ସେଇ ମାନସିକ ଅନ୍ଧକାର ଭିତରେ ହିଁ ବିଦାୟ ନେବାକୁ ଯାଉଛି । ମୋ ବ୍ୟକ୍ତିତ୍ୱରେ ବହୁ ରକମର ଦୁର୍ବଳତା ଭରି ରହିଛି, ଯେଉଁଥି ପାଇଁକି ଗଭୀର ଦୁଃଖରେ ଭାଂଗି ପଡୁଛି । ଯଦିଓ ମୋ ବକ୍ତବ୍ୟରେ ସବୁବେଳେ ଭଷାର ଘୋର ଅଭାବ ଥାଏ; ତଥାପି ବହୁ କଷ୍ଟରେ ମୋ ମହାବିଦ୍ୟାଳୟର ସମସ୍ତଙ୍କ ପାଇଁ କଥା କେଇପଦ କହିଯାଉଛି । ଏଇ କେଇପଦ କଥା ବ୍ୟତୀତ ମୋ ପାଖରେ ମହାବିଦ୍ୟାଳୟକୁ ଦେବା ଲାଗି କିଛି ନାହିଁ ।

ମହାବିଦ୍ୟାଳୟର ଅଭାବ ଅସୁବିଧା ବିଷୟରେ ତ ଆମ ସମସ୍ତେ ସବୁବେଳେ ବଖାଣି ଆସିଛେ । ଆମର ଶକ୍ତି ମୁତାବକ ଚେଷ୍ଟାକରି କିଛି ଅଭାବ ଦୂରକରି ପାରିଛେ । କିନ୍ତୁ ଅଭାବ ଅସୁବିଧା ପଛରେ କେତୋଟି ସାମାଜିକ ସମସ୍ୟା ରହିଛି, ଯାହାକି ଆମ ସମସ୍ତଙ୍କର ବୁଝିବା ନିତାନ୍ତ ଆବଶ୍ୟକ । ସେ ସମସ୍ୟା ସବୁର ସମାଧାନ ସୂତ୍ର ମୋରି ପିଲାଏ ହୁଏତ ଭବିଷ୍ୟତରେ ବାହାର କରି ପାରିବେ ।

ଯେଉଁ ସମାଜ, ପରିବେଶ ତଥା ପରିବାର ଭିତର ଦେଇ ଛାତ୍ରର ଜୀବନ ଆଗେଇ ଆସିଥାଏ, ସେ ସବୁକୁ ବାଦ ଦେଇ ଶିକ୍ଷାର ଆଲୋଚନା କରଯାଇ ପାରେ ନାହିଁ ଶିକ୍ଷା ସେ ସବୁଠାରୁ ବିଚ୍ଛିନ୍ନ ନୁହେଁ । ଯେଉଁଠି ସମାଜ ଓ ପରିବେଶ ରୋଗଗ୍ରସ୍ତ, ସେଠାରେ ନିର୍ମଳ ଶିକ୍ଷାର ଆଶା ବୃଥା ମାତ୍ର ।

ଆମେ ସମସ୍ତେ ଜାଣିଥାଇ ଆମର ସମସ୍ତ ଶିକ୍ଷାନୁଷ୍ଠାନ ସରକାରଙ୍କ ଦ୍ୱାରା ପରିଚାଳିତ । ସରକାରଙ୍କର ଅର୍ଥ ଓ ପରିଚାଳନା ଦାୟିତ୍ୱ ଉପରେ ଯେ କୌଣସି ଶିକ୍ଷାନୁଷ୍ଠାନ ନିର୍ଭର କରୁଅଛି । ସରକାରଙ୍କ ସୀମିତ ଅର୍ଥ ଶିକ୍ଷାର ଉନ୍ନତି ଦିଗରେ ଯେତିକି ପ୍ରତିବଂଧକ, ସରକାରୀ ପରିଚାଳନା କଳ ତା'ଠାରୁ ଅଧିକ କ୍ଷତି ଦାୟକ ।

ଏହା ଅବଶ୍ୟ ସତ୍ୟ ଯେ ସରକାର କେବେ ହେଲେ ସବୁ ରକମ ସୁବିଧା ସବୁ ଶିକ୍ଷାନୁଷ୍ଠାନକୁ ଦେଇ ପାରିବେ ନାହିଁ । କିନ୍ତୁ ନୀତି ନିୟମର ଠିକ ଭାବରେ ପ୍ରୟୋଗ ଅନେକ ସମସ୍ୟାର ସମାଧାନ କରି ପାରିବ ।

Digitized by PPRACHIN, SOA

ଅନେକ ସମୟରେ ଦେଖାଯାଇଥାଏ ଶିକ୍ଷା ସାଙ୍ଗରେ ସଂପୃକ୍ତ ନଥିବା ଶାସକ, ବ୍ୟକ୍ତି ଶିକ୍ଷା ପରିଚାଳନା ବିଷୟରେ ନାନାଦି ମନ୍ତବ୍ୟ ଦେଇଥା'ନ୍ତି, ଯାହାକି ଶିକ୍ଷାର ଅଗ୍ରଗତିରେ ବାଧା ଦେଇଥାଏ । ସରକାରଙ୍କ ପାଖକୁ ଯାଉଥିବା ଚିଠି, ଅଭିଯୋଗ, ସମସ୍ୟା ସବୁ ବହୁସ୍ତର ଦେଇ ଗତିକରେ । ସେ ସ୍ତରମାନଙ୍କରେ ଯତ୍ନବାନ ନହେଲେ ଅର୍ଥାତ ଯଥା ସମୟରେ ଉପଯୁକ୍ତ ଅଫିସର, କର୍ମଚାରୀବୃନ୍ଦଙ୍କୁ ଦେଖା ନ କଲେ ଏବଂ ତାଙ୍କୁ କାକୁତି ମିନତି ହୋଇ ଅନୁରୋଧ ନ କଲେ ଅନେକ ଜିନିଷ ହଜଇବାକୁ ପଡ଼ିଥାଏ । ଗୋଟିଏ ଶିକ୍ଷାନୁଷ୍ଠାନର ପରିଚାଳକ ଜଣେ ଶିକ୍ଷକ । ଗୋଟିଏ ଶିକ୍ଷକ ସରକାରୀ ଅଫିସ୍ ମାନଙ୍କୁ ବାରମ୍ବାର ଯାଇ ଶିକ୍ଷାନୁଷ୍ଠାନର ଉନ୍ନତି ପାଇଁ ନାନାଦି କର୍ମଚାରୀମାନଙ୍କ ପାଖରେ ଗୋଡଭାଙ୍ଗି ଠିଆହୋଇ ଅନୁରୋଧ କରୁଥିବ–ତା' କଥା ହୁଏତ କେହି ଶୁଣୁ ବି ନ ଥିବେ – ଆବଶ୍ୟକ ହେଲେ ଶିକ୍ଷାନୁଷ୍ଠାନର କିଛି କାର୍ଯ୍ୟ କରିବା ପାଇଁ ଉକ୍ତ ଅଫିସରେ କିଛି ଅର୍ଥ ବ୍ୟୟ କରିବାକୁ ପଡ଼ିବ – ଏ ସବୁ ଦ୍ୱାରା ଶିକ୍ଷାର ମାନ ତଳକୁ ଯିବା ସଙ୍ଗେ ସଙ୍ଗେ ଶିକ୍ଷକର ସମ୍ମାନ ବାଧାପ୍ରାପ୍ତ ହୁଏ । କିନ୍ତୁ ଅନୁଷ୍ଠାନର ମୁଖ୍ୟ ହିସାବରେ ଶିକ୍ଷକ ଯଦି ଏ ସବୁ କାର୍ଯ୍ୟ କରି ଅନୁଷ୍ଠାନର ଉନ୍ନତି ନକରି ପାରିଲା ତେବେ ତା'ର ଶାସନଗତ ଯୋଗ୍ୟତା ଉପରେ ପ୍ରଶ୍ନ କରଯାଇଥାଏ ।

ଅନନ୍ୟୋପାୟ ହୋଇ ଶିକ୍ଷାନୁଷ୍ଠାନ ଦାୟିତ୍ୱରେ ଥିବା ଶିକ୍ଷକ ଅନୁଷ୍ଠାନର ବାର୍ଷିକୋତ୍ସବ ପ୍ରଭୃତିରେ ମନ୍ତ୍ରୀ ତଥା ଉଚ୍ଚ ସରକାରୀ କର୍ମଚାରୀମାନଙ୍କୁ ନିମନ୍ତ୍ରଣ କରି ଅନୁଷ୍ଠାନର ଅଭାବ ଅସୁବିଧା ବିଷୟରେ ବଖାଣି ଥାଆନ୍ତି । ମନ୍ତ୍ରୀ ବା ଉଚ୍ଚ ସରକାରୀ କର୍ମଚାରୀ ହୁଏତ ଅଭାବ ଅସୁବିଧାକୁ ହୃଦୟଙ୍ଗମ କରି ପାରନ୍ତି, କିନ୍ତୁ ସରକାରୀ କଳ ଏପରି ପରିଚାଳିତ ଯେ, ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ତାଙ୍କ ପ୍ରତିଶ୍ରୁତିକୁ କାର୍ଯ୍ୟକାରୀ କରିବା ପାଇଁ ପୁଣି ବିଚରା ଶିକ୍ଷକଙ୍କୁ ସେଇ କଳ ଭିତରେ ପେଷି ହେବାପାଇଁ ଯିବାକୁ ପଡ଼େ ।

ମୋର ଛାତ୍ର-ଛାତ୍ରୀମାନଙ୍କୁ ଗଭୀର ଚିନ୍ତା କରିବାକୁ ପଡିବ କି ଉପାୟରେ ସରକାରୀ କଳକୁ ନୀତି ନିୟମରେ ପରିଚାଳିତ କରି ଭବିଷ୍ୟତ ପାଇଁ ଏକ ସୁନ୍ଦର ସମାଜ ଗଢ଼ାଯାଇ ପାରିବ ।

ଗୋଟିଏ ମହାବିଦ୍ୟାଳୟର ଅଧ୍ୟକ୍ଷ ପ୍ରଧାନତଃ ଜଣେ ଶିକ୍ଷକ, ଶିକ୍ଷାର ଉନ୍ନତି ତା'ର ଲକ୍ଷ୍ୟ ହେବା ଉଚିତ । କିପରି ଭାବରେ ପିଲାମାନେ ପଢ଼ିବେ ଓ କିପରି ଭାବରେ ଅଧ୍ୟାପକମାନେ ପଢ଼ାଇବେ – ଏ ସବୁ ଅଧ୍ୟକ୍ଷଙ୍କର ପ୍ରଧାନ ଦାୟିତ୍ୱ । କିନ୍ତୁ ଯାହା ଦେଖାଯାଉଛି ଶାସନଗତ ଦାୟିତ୍ୱ, ଆକାଉଣ୍ଟସ୍ ଦାୟିତ୍ୱ ପ୍ରଭୃତି ଅଧ୍ୟକ୍ଷଙ୍କୁ ଖାଲି ବ୍ୟସ୍ତ ତ ରଖୁନାହିଁ, ଗଭୀର ଚିନ୍ତା ଏବଂ ଅଶାନ୍ତି ଭିତରେ ହନ୍ତସନ୍ତ କରୁଛି । ଶିକ୍ଷାନୁଷ୍ଠାନ ମାନଙ୍କର କାର୍ଯ୍ୟାଳୟ ମାନଙ୍କରେ ସରକାରୀ ନିୟମ ବିଷୟରେ ଯଥେଷ୍ଟ ଜ୍ଞାନଥିବା କର୍ମଚାରୀ ପ୍ରାୟ ନ ଥା'ନ୍ତି । ତେଣୁ ସବୁ ବିଷୟରେ ଦାୟିତ୍ୱ ଅଧ୍ୟକ୍ଷଙ୍କୁ ହିଁ ନେବାକୁ ପଡ଼ିଥାଏ । ପିଲାଙ୍କ କ୍ଲାସ ହୋଇ ପାରିଲା ନାହିଁ କି ପିଲାଙ୍କ କୋର୍ସ ସରିଲା ନାହିଁ–ଏ ସବୁ ପାଇଁ ଅଧ୍ୟକ୍ଷଙ୍କୁ ସରକାର ଯେତେ ଦାୟୀ ନ କରିବେ– ତୃତୀୟ ଚତୁର୍ଥ ଶ୍ରେଣୀ କର୍ମଚାରୀଙ୍କ ନିଯୁକ୍ତି ତଥା ନାନାଦି ଆକାଉଣ୍ଟସ୍ ବ୍ୟାପାର ନେଇ କୌଣସି ନିୟମର ସାମାନ୍ୟ ଅନିଚ୍ଛାକୃତ ବ୍ୟତିକ୍ରମ ହୋଇଗଲେ ସଙ୍ଗେ ସଙ୍ଗେ ଅଧ୍ୟକ୍ଷ ହିଁ ଅନୁଷ୍ଠାନର ମୁଖ୍ୟ ଭାବରେ ଦାୟୀ ହେବେ । ସର୍ଭିସ କୋର୍ଡ, ଏଜୁକେଶନ କୋର୍ଡ ଏବଂ ସରକାରୀ ଆଦେଶ ପ୍ରଭୃତିର କୌଣସି ଗୋଟିଏ ନିୟମର ଖିଲାପ ହେବା ଦର୍ଶାଇ ଅନୁଷ୍ଠାନର ମୁଖ୍ୟଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ



Digitized by PPRACHIN, SOA

କାର୍ଯ୍ୟାନୁଷ୍ଠାନ ଗ୍ରହଣ କରଯାଇପାରେ । ତେଣୁ ଅଧ୍ୟକ୍ଷଙ୍କ ଶିକ୍ଷା ପରିଚାଳନା ଅପେକ୍ଷା ସର୍ଭିସ୍ କୋର୍ଡ, ଏଜୁକେଶନ କୋର୍ଡ, ବିଭିନ୍ନ ସମୟର ସରକାରୀ ଆଦେଶନାମା ପ୍ରଭୃତି ପ୍ରତି ଅଧିକ ଲକ୍ଷ୍ୟ ଦେବାକୁ ପଡ଼ିଥାଏ । ପ୍ରତିଟି ମୁହୂର୍ତ୍ତରେ ସରକାରଙ୍କ ନିୟମ ଓ ଘନ ଘନ ନିୟମର ପରିବର୍ତ୍ତନ ଅଧ୍ୟକ୍ଷଙ୍କୁ ଅଶାନ୍ତିର ବାତାବରଣ ଭିତରେ ରହିବାକୁ ବାଧ୍ୟ କରିଥାଏ । ଜଣେ ନିଷ୍ଠାପର କର୍ମଚାରୀ ଭାବରେ ଅଧ୍ୟକ୍ଷ ତା କାର୍ଯ୍ୟରେ ହେଳା କରି ପାରିବ ନାହିଁ, ନିଷ୍ଠାପର ସାଧୁ ହୋଇ ମଧ୍ୟ ସାମାନ୍ୟ ଅସାବଧାନତା ବା ନିୟମର ଅଜ୍ଞତା ହୁଏତ ତାକୁ ଅସାଧୁ, ଅନଭିଜ୍ଞ କର୍ମଚାରୀ ରୂପେ ପରିଚୟ ଦେବ । ବିଶ୍ୱ ବିଦ୍ୟାଳୟ ଅନୁଦାନ ଆୟୋଗ (ୟୁ. ଜି. ସି.) ତରଫରୁ ପ୍ରକାଶିତ ଗବେଷଣା ମୂଳକ ପ୍ରବନ୍ଧରେ କଲେଜର ମୁଖ୍ୟଙ୍କ ସମ୍ପର୍କରେ ପ୍ରଦାନ କରଯାଇଥିବା ସୁପାରିଶର କିଛି ଅଂଶ ନିମ୍ନରେ ଉଦ୍ଧାର କରଯାଉଅଛି ।

" ROLE PERFORMANCE OF HEADS OF COLLEGES "

The College Head appears to be more of an administrator than an instructional leader and spends most of time in dealing with routine administrative chores rather than with academic matters. The Head of the College is, by training and profession, an academician He rises to the level of headship by virtue of his accomplishments in and contribution to the pursuit of excellence in academic fields. In order to make it possible for him to play a role which is more befitting to his background and profession, creation of a post of an administrative manager is suggested which would allow more time for a College head to perform the role of an instructional leader.

( Journal of Higher Education Vol. 14. No. 1-3, 1988-89 )

ସମାଜରେ ସମସ୍ତଙ୍କୁ ଶିକ୍ଷିତ କରିବାଲାଗି ବିଦ୍ୟାଳୟ ଓ ମହାବିଦ୍ୟାଳୟ ବହୁ ସଂଖ୍ୟାରେ ଖୋଲି ଗ୍ଲାଇଛି । କି ରକମ ଛାତ୍ର ଏହି ଅନୁଷ୍ଠାନରୁ ବାହାରିବେ ସେ ଦାୟତ୍ୱ ପୁରାପୁରି ଶିକ୍ଷକ ବା ଅଧ୍ୟାପକ ମାନଙ୍କର । ସମାଜ ଶିକ୍ଷକ ମାନଙ୍କଠାରେ ଏହି ଆସ୍ଥା, ବିଶ୍ୱାସ ବା ଟ୍ରଷ୍ଟ ରଖି ଆସିଛି । ଏହି ଟ୍ରଷ୍ଟ ପାଇଁ ଶିକ୍ଷକ ଗର୍ବ ଅନୁଭବ କରିବା ସଙ୍ଗେ ସଙ୍ଗେ କଠିନ ପରିଶ୍ରମ କରି ସମାଜ ରଖିଥିବା ବିଶ୍ୱାସର ଯୋଗ୍ୟତା ପ୍ରତିପାଦନ କରିବା ଏକାନ୍ତ ଆବଶ୍ୟକ । କିନ୍ତୁ ମୋର ଶିକ୍ଷକ ଜୀବନର ଦୀର୍ଘ ଅଭିଜ୍ଞତାରୁ ମୁଁ ଜାଣିବାକୁ ପାଇଛି ଯେ ଅନେକ ସ୍ଥଳରେ ଶିକ୍ଷକ ବା ଅଧ୍ୟାପକ, ସମାଜ ତାଙ୍କ ଠାରେ ରଖିଥିବା ବିଶ୍ୱାସର ଯୋଗ୍ୟତା ପ୍ରତିପାଦନ କରିପାରି ନାହାନ୍ତି । ଏଥିପାଇଁ ଅଧ୍ୟାପକମାନେ ହିଁ ଏକମାତ୍ର ଦାୟୀ—ତାହା ନୁହେଁ, ଛାତ୍ରର ଶିକ୍ଷାପାଇଁ ଗୃହ ପରିବେଶ, ଶିକ୍ଷାନୁଷ୍ଠାନ ଏବଂ ସମାଜ ସମ ଭାବରେ ଦାୟୀ । ସେମାନେ ଏକତ୍ର ଶିକ୍ଷାର ପ୍ରଣାଳୀ ସ୍ଥିର କରିବା ସଙ୍ଗେ ସଙ୍ଗେ ଶିକ୍ଷାନୁଷ୍ଠାନର ସମ୍ମାନ ରକ୍ଷା କରିବେ । ଅଧ୍ୟାପକମାନେ ତ ସମାଜରୁ ବାହାରି ଅଲଗାହୋଇ ପାରିବେ ନାହିଁ । ତେଣୁ ସମାଜର ଅନ୍ୟାନ୍ୟ ବ୍ୟକ୍ତି ବିଭିନ୍ନ କର୍ମ କ୍ଷେତ୍ରରେ କିପରି କାର୍ଯ୍ୟ କରୁଛନ୍ତି, କିପରି ବେତନ ପାଉଛନ୍ତି, କିପରି ନିଷ୍ଠା ରଖୁଛନ୍ତି; ସେ ସବୁ ଅଧ୍ୟାପକର ଦାୟିତ୍ୱ ଏବଂ କର୍ତ୍ତବ୍ୟକୁ ପ୍ରଭାବିତ କରିଥାଏ ।



Digitized by PPRACHIN, SOA

Teachers have to be seen in the mainstream of the *life* pattern of the society. ବହୁ ଅଧ୍ୟାପକ ମୋ ଆଗରେ ଅଭିଯୋଗ କରିଛନ୍ତି ସେମାନଙ୍କର କାର୍ଯ୍ୟାନୁଯାୟୀ ଦରମା ବିଷୟରେ । ଅନେକ ଦୁଃଖର ସହିତ ପ୍ରକାଶ କରିଛନ୍ତି ସେମାନଙ୍କର କାର୍ଯ୍ୟପ୍ରତି କିପରି ଭାବରେ ସ୍ପୃହା ବା ଆଗ୍ରହ ଆସୁନାହିଁ । ଅନ୍ୟାନ୍ୟ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀମାନଙ୍କର କାର୍ଯ୍ୟରେ ହେଳା, ଅସାଧୁତା, ଗର୍ବ, ଭଲ ବ୍ୟବହାର ତଥା ମିଠାକଥା ପଦେର ଅଭାବ ଇତ୍ୟାଦି କିପରି ଭାବରେ ସେମାନଙ୍କୁ ପ୍ରଭାବିତ କରିଛି ସେ ବିଷୟ ତଥ୍ୟ ଅନେକଙ୍କଠାରୁ ଶୁଣିବାକୁ ପାଇଛି ଏବଂ ମନରେ ଗଭୀର ଦୁଃଖ ଜାତ ହୋଇଛି ।

ଭାରତ ବର୍ଷର ଶିକ୍ଷାବିତ୍‌ମାନଙ୍କର ଗବେଷଣାରୁ ପ୍ରକାଶ ପାଇଛି ଯେ ଶିକ୍ଷକ ବା ଅଧ୍ୟାପକର ଦାୟିତ୍ୱ ସମ୍ପାଦନର ବିଚାରକ କେବଳ ଜଣେ ଶିକ୍ଷକ ହିଁ ହୋଇ ପାରିବ । କୌଣସି ଅଣ ଶିକ୍ଷକ ଶିକ୍ଷକର କାର୍ଯ୍ୟର ବିଚାରକ ହେବା ଅବାଞ୍ଛନୀୟ । ଅନ୍ୟ ପକ୍ଷରେ, "Teacher's accountability is best taken into account by teachers themselves when they identify themselves with the teaching profession with commitment and dedication." କିନ୍ତୁ କର୍ମିଟିମେଣ୍ଟ ଓ ଡେଡ଼ିକେସନର ଘୋର ଅଭାବ ହିଁ ମତେ ବହୁତ ଆଘାତ ଦେଇଛି । ମୋର ସାରା ଜୀବନରେ ମୁଁ କିଛି ସମାଜ ପାଇଁ ମଙ୍ଗଳ କରିପାରି ନାହିଁ—ନିଜ ପାଇଁ ମଧ୍ୟ ଶିକ୍ଷା ବା ଅର୍ଥର କିଛି ଆଗେଇ ପାରି- ନାହିଁ । କିନ୍ତୁ ସାରା ଜୀବନ କମିଟମେଣ୍ଟ ଓ ଡେଡ଼ିକେସନ କୁ ଆଦର୍ଶ ବୋଲି ଧରି ନେଇଛି । ଏ ଦୁଇଟିର ଅଭାବ ମତେ ଦୁଃଖ ଦିଏ ।

ମୋ ପିଲମାନେ ଭବିଷ୍ୟତର ଶିକ୍ଷକ । ଶିକ୍ଷକର ଦୁଃଖ, ଅଭାବ' ଅଶାନ୍ତି ଏବଂ କେତେକ କ୍ଷେତ୍ରରେ କାର୍ଯ୍ୟରେ ଅବହେଳା-ଏ ସବୁ ସହିତ ମୋ ପିଲମାନେ ଘନିଷ୍ଠ ଭାବରେ ସମ୍ପୃକ୍ତ ହୋଇଥିଲେ ଆଗାମୀ ଯୁଗର ଶିକ୍ଷା ପ୍ରଣାଳୀ ତଥା ଶିକ୍ଷକଙ୍କୁ ବଦଳାଇ ପାରିବ ।

ମୋ ଶିକ୍ଷକ ଜୀବନ ଭିତରେ ବିଶ୍ୱବିଦ୍ୟାଳୟ ତଥା ଅନ୍ୟାନ୍ୟ ପରୀକ୍ଷା ସଂସ୍ଥାମାନଙ୍କର ପରୀକ୍ଷା ପରିଚାଳନା ମତେ ବିଶେଷ ଭାବରେ ଦୁଃଖ ଦେଇଛି । ରାଉରକେଲାର ଛାତ୍ର ଛାତ୍ରୀ ଜାଣନ୍ତି କିପରି ଭାବରେ ପରୀକ୍ଷାର ଫଳା ଫଳ ଦୀର୍ଘ ଦିନ ପର୍ଯ୍ୟନ୍ତ ସ୍ଥଗିତ ହୋଇ ରହିଥାଏ ଏବଂ ସେମାନଙ୍କୁ କେତେ ମାନସିକ ଅଶାନ୍ତି ଭିତର ଦେଇ ଗତି କରିବାକୁ ପଡ଼ିଥାଏ । ପରୀକ୍ଷା ସଂସ୍ଥାମାନଙ୍କର ଶୃଙ୍ଖଳାର ଅଭାବ ହେତୁ ଠିକ୍ ସମୟରେ ପ୍ରବେଶପତ୍ର, ପ୍ରଶ୍ନପତ୍ର ଇତ୍ୟାଦି ପରୀକ୍ଷା କେନ୍ଦ୍ରରେ ପହଞ୍ଚ ପାରେ ନାହିଁ । ପରୀକ୍ଷା ପରିଚାଳନା ପାଇଁ ଆବଶ୍ୟକ ଅର୍ଥ ମଧ୍ୟ ଠିକ୍ ସମୟରେ ପହଞ୍ଚ ପାରେ ନାହିଁ । ସରକାରୀ ଅର୍ଥକୁ ପରୀକ୍ଷା କାର୍ଯ୍ୟରେ ଖର୍ଚ୍ଚ କରିବାର ଅଧିକାର ଅଧ୍ୟକ୍ଷର ନାହିଁ । ପରୀକ୍ଷା ପରିଚାଳନାରେ ନାନାଦି ତ୍ରୁଟି ଛାତ୍ର ସମାଜ ତଥା ଶିକ୍ଷକମାନଙ୍କ ମନରେ ଏକ ପ୍ରକାର ନୈରାଶ୍ୟ ସୃଷ୍ଟି କରିଥାଏ ।

ଘରୋଇ ଭାବରେ ପରୀକ୍ଷା ଦେଉଥିବା ପରୀକ୍ଷାର୍ଥୀମାନଙ୍କର ଦୁରବସ୍ଥା ସମସ୍ତେ ଅଳ୍ପେ ବହୁତେ ଜାଣନ୍ତି । ସେମାନଙ୍କୁ କୌଣସି ମହାବିଦ୍ୟାଳୟ ଅଧ୍ୟକ୍ଷଙ୍କ ଅନୁମତି ନେଇ ପରୀକ୍ଷା ସଂସ୍ଥାମାନଙ୍କୁ ଦର୍ଖାସ୍ତ ଦେବାକୁ ପଡ଼ିଥାଏ । ଅଧିକାଂଶ ଅଧ୍ୟକ୍ଷ ମହାବିଦ୍ୟାଳୟରେ ପଢ଼ାପଢ଼ିର ବ୍ୟାଘାତ ଦୃଷ୍ଟିରୁ ଏବଂ ନିଜ ମହାବିଦ୍ୟାଳୟରେ



Digitized by PPRACHIN, SOA

ପରୀକ୍ଷା ପରିଚାଳନା ହେତୁ ଛାତ୍ରାଭାବ ଦୃଷ୍ଟିରୁ ସରକାର ଛାତ୍ର ଛାତ୍ରୀଙ୍କୁ ଏ ପ୍ରକାର ଅନୁମତି ଦେବାକୁ ରାଜି ହୁଅନ୍ତି ନାହିଁ । ସରକାର ପରୀକ୍ଷାର୍ଥୀମାନେ ଏପରି ଭାବରେ ମହାବିଦ୍ୟାଳୟମାନଙ୍କୁ ଥର ଥର ଯାଇ ଅଧ୍ୟକ୍ଷଙ୍କୁ କାକୁତି ମିନତି କରିବା ପରିବର୍ତ୍ତେ ପରୀକ୍ଷା ସଂସ୍ଥାମାନ ମହାବିଦ୍ୟାଳୟ ଅଧ୍ୟକ୍ଷମାନଙ୍କ ସହିତ ଆଲୋଚନା କରି ମହାବିଦ୍ୟାଳୟମାନଙ୍କର ଅସୁବିଧାମାନ ହୃଦୟଙ୍ଗମ କରି ପରୀକ୍ଷାର ବନ୍ଦୋବସ୍ତ କରି ପରୀକ୍ଷାର୍ଥୀମାନଙ୍କୁ ଜଣାଇବା ଉଚିତ୍ ।

ମୋର କାର୍ଯ୍ୟକାଳ ଭିତରେ କଲେଜ ଶିକ୍ଷକମାନଙ୍କର ଧର୍ମଘଟ ଦୀର୍ଘଦିନ ଧରି ଚାଲିଥିଲା । ସେତେବେଳେ ମୋ ମନ ଭିତରେ ଯେଉଁ ଆଶଂକାର ସୃଷ୍ଟି ହୋଇଥିଲା ତାହା ସଂକ୍ଷେପରେ ପ୍ରକାଶ କରିବାକୁ ବାଧ୍ୟ ହେଉଛି । କଲେଜ ଶିକ୍ଷକଙ୍କ ଆନ୍ଦୋଳନ ସମୟରେ ସରକାର ଛାତ୍ରଙ୍କ ମଙ୍ଗଳ ଦୃଷ୍ଟିରୁ ପରୀକ୍ଷା ଓ ମୂଲ୍ୟାୟନ କାର୍ଯ୍ୟ ସମ୍ପାଦନ କରାଇ ପାରିଥିଲେ, ତାହା ସମସ୍ତଙ୍କ ପାଇଁ ଆନନ୍ଦର ବିଷୟ ଥିଲା । କିନ୍ତୁ ଉଚ୍ଚଶିକ୍ଷିତ ବୁଦ୍ଧିଜୀବୀ ମାନଙ୍କୁ ଦୀର୍ଘଦିନ ଧରି 'ଧର୍ମଘଟ' ଓ 'ଆନ୍ଦୋଳନ' ଭିତରେ ରହିବାକୁ ଦିଆଗଲେ ସେମାନଙ୍କର ମାନସିକ ସ୍ୱଚ୍ଛନ୍ଦ ଚିନ୍ତାଧାରାରେ ଯେଉଁ ବାଧା ଉପୁଜେ, ତାହା ସମଗ୍ର ସମାଜ ପକ୍ଷରେ କ୍ଷତି କାରକ । ୟୁ. ଜି. ସି. ଦରମା ପ୍ରବର୍ତ୍ତିତ ହେଲା– ଧର୍ମଘଟର ଅବସାନ ଘଟିଲା । କିନ୍ତୁ ଦୀର୍ଘଦିନ ଧରି ଧର୍ମଘଟ ଫଳରେ ପ୍ରତ୍ୟେକ ଉଚ୍ଚଶିକ୍ଷିତ ଶିକ୍ଷକର ମାନସିକ ମାନର ଯେଉଁ ହ୍ରାସ ଘଟିଲା, ତାହା ଅପୂରଣୀୟ ।

ଦୀର୍ଘ ସାତ ବର୍ଷ ଧରି ମୁଁ ସମାଜର 'ପ୍ରତାରଣା' ରୂପକ ବ୍ୟାଧି ବିଷୟରେ ସଂଗ୍ରାମ କରିବା ଲାଗି ମୋ ଛାତ୍ର ଛାତ୍ରୀଙ୍କୁ ବରାବର ପରାମର୍ଶ ଦେଇ ଆସିଛି । ସେଇ ବ୍ୟାଧି ହିଁ ଆମକୁ ତିଳ ତିଳ କରି ମାରି ଚାଲିଛି । ଆମେ ଯାହା କହୁ ବା ଲେଖୁ ଆମେ ତାହା ନୁହଁ । ଉପଦେଶ ଛଳରେ ବହୁତ କିଛି କଥା କହୁ । ମୋ ଅଧୀନରେ କାର୍ଯ୍ୟ କରୁଥିବା କର୍ମଚାରୀଙ୍କ ଅନ୍ୟାୟ ଅର୍ଥ ଉପାର୍ଜନ, ତଥା ସବୁ ରକମର ଅସାଧୁତା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାକୁ ମୁଁ ତତ୍ପର, କିନ୍ତୁ ନିଜେ ସେଇ ସୁବିଧା ବା ସୁଯୋଗ ପାଇଲେ ନିଜକୁ ସେ ପ୍ରଲୋଭନରୁ ମୁକ୍ତ କରିପାରୁ ନାହିଁ । 'ମୋ ଜାତି', 'ମୋ ଦେଶ', 'ମୋ ସମାଜ' ଏ ଭାବନା ମନ ଭିତରେ ଦୃଢ଼ ନ ହେବା ପର୍ଯ୍ୟନ୍ତ ପ୍ରତ୍ୟେକ ବ୍ୟକ୍ତି ଅସାଧୁ ହେବାରୁ ନିଜକୁ ମୁକ୍ତ କରି ପାରିବେ ନାହିଁ । ନିଜର ବା ଅନୁଷ୍ଠାନର କାର୍ଯ୍ୟ କରିବା ପାଇଁ ହୁଏତ ଅନ୍ୟ କେଉଁ ସରକାରୀ ଦପ୍ତରରେ ପଇସା ଖର୍ଚ୍ଚ କରିବାକୁ ପଡ଼ିପାରେ– ସେ ପଇସା ଆସିବ କେଉଁଠାରୁ ? ଅବସ୍ଥା ଚକ୍ରରେ ଜଣେ ଅସାଧୁ ହେବାକୁ ବାଧ୍ୟ ହୁଏ । ନିଜେ ଅସାଧୁ ଥାଇ ଅନ୍ୟ ଜଣକୁ ଅସାଧୁ କହିବାର ଯେଉଁ ପ୍ରତାରଣା ଭିତରେ ସମାଜର ପ୍ରତ୍ୟେକ ବ୍ୟକ୍ତି ଚାଲିଛି, ସେ ପ୍ରତାରଣାରୁ ରକ୍ଷା ନ ପାଇଲେ ସମାଜ ଧ୍ୱଂସ ଆଡକୁ ଗତି କରିବ । ସେ କ୍ଷେତ୍ରରେ କୌଣସି ଶିକ୍ଷାନୁଷ୍ଠାନର ମଙ୍ଗଳ ଅସମ୍ଭବ ।

ମହାବିଦ୍ୟାଳୟର ସମସ୍ତ ଶ୍ରେଣୀର କର୍ମଚାରୀ ବୃନ୍ଦଙ୍କୁ ମୋର ବିନୀତ ନିବେଦନ– ସେମାନେ ଏ ଅନୁଷ୍ଠାନକୁ ଭଲ ପାଆନ୍ତୁ । ନିଜ ନିଜର କର୍ତ୍ତବ୍ୟ ପାଳନ ଦିଗରେ କଠୋର ପରିଶ୍ରମ କରି ମାନସିକ ଶାନ୍ତି ଲାଭ କରନ୍ତୁ, ଯେଉଁ ଶାନ୍ତି କି ଅନୁଷ୍ଠାନ ପାଇଁ ମଙ୍ଗଳ ଦାୟକ ହେବ । ପରିଶ୍ରମ କରିବା ପାଇଁ ଆମକୁ ଭଗବାନ ଶକ୍ତି ଦେଇଛନ୍ତି, କିନ୍ତୁ କ'ଣ ଘଟିଯାଇଛି କେଜାଣି ଆମେ ପରିଶ୍ରମ କାତର ହୋଇଯାଉଥାଇଁ, କାମରେ ହେଳା କରିବା– କାମରେ ନୀତି ନିୟମ ନ ରଖିବା– କାମରେ ସ୍ୱାର୍ଥ ମନୋବୃତ୍ତିକୁ ଯୋଡ଼ିଦେବା– ଏ ସବୁ ଆମମାନଙ୍କ ଠାରେ ଅଭ୍ୟାସରେ ପଡ଼ିଯାଇଛି । ଆମେ ହିଁ ନିଜ ଚେଷ୍ଟା ବଳରେ ଏ ସବୁ ଅଭ୍ୟାସରୁ ନିଜକୁ ମୁକ୍ତ କରି ଏକ ସୁସ୍ଥ ମନୋବୃତ୍ତି ନେଇ ଏ ଅନୁଷ୍ଠାନର ବହୁତ କିଛି ଉନ୍ନତି କରି ପାରିବା ।

ରାଉରକେଲା ସରକାରୀ ମହାବିଦ୍ୟାଳୟର ଅଧ୍ୟକ୍ଷ ପଦ ତଥା ଦୀର୍ଘ ଦିନର ସରକାରୀ ଚାକିରୀରୁ ବିଦାୟ ନେଲା ବେଳକୁ ମନ ଭିତରେ ଅଙ୍କେ ଲିଭଇଥିବା ସମସ୍ୟା ସବୁ ଆନ୍ଦୋଳନ ସୃଷ୍ଟି କରୁଛନ୍ତି । ଏ ସମସ୍ୟା ସବୁକୁ ମୋ ପିଲା, ମୋ ସହକର୍ମୀ ଓ କର୍ମଚାରୀବୃନ୍ଦଙ୍କ ହାତରେ ସମର୍ପି ଏବଂ ଭବିଷ୍ୟତରେ ସମାଧାନର ଆଶା ରଖି ଏ ମହାବିଦ୍ୟାଳୟରୁ ବିଦାୟ ନେଉଛି । ମୋ ବିଦାୟ ବେଳର ଆଖିରୁ ବୋହୁଥିବା ଦୁଇ ଟୋପା ଲୁହ ହିଁ ଏ ଅନୁଷ୍ଠାନକୁ ମୋର ଉପହାର– ମୋର ଆନ୍ତରିକ ଆଶୀର୍ବାଦ । ... ... ... ... ... ... ... ... ...

●



Digitized by PPRACHIN, SOA

# Declaration Form

**FORM – IV**

( See Rule–8 )

| | | |
|---|---|---|
| 1. | Title of the Magazine | – Sarvesham |
| 2. | Place of Publication | – Govt. College<br>Rourkela-4 |
| 3. | Periodicity of its Publication | – Yearly |
| 4. | Printers Name | – Sri G. Das |
| | Nationality | – Indian |
| | Address | – Principal, Govt. College<br>Rourkela-4 |
| 5. | Publisher' Name | – Sri G. Das |
| | Nationality | – Indian |
| | Address | – Principal, Govt. College<br>Rourkela |
| 6. | Editors Name | – Sri N. C. Nayak<br>Smt J R. Patnaik<br>Sri K. Singh<br>Dr. (Smt) B. Mishra<br>Sri D. Sahu<br>Dr Sricharan Mohanty<br>Ms. A Chakravorty |
| | Nationality | – Indian |
| | Address | Govt College, Rourkela-4 |
| 7. | Language in which it is Published | – Oriya' English & Hindi |
| 8. | Place of Printing | – Suchitra Printers<br>Bisra Road, Rourkela-11 |

I, Sri Ganeswer Das, Principal Government College, Rourkela, hereby declare that the statement given-above is true to the best of my knowledge and belief.

Sd/-

**Sri Ganeswar Das**

1st. March 1991.

Signature of the Publisher

Digitized by PPRACHIN, SOA

## WINTER FESTIVAL 1991



Hon'ble Minister Mr M. Kissan, Mrs. N. A. Gupta. Prof. G. Das discussing with College Union Executive Body

## COLLEGE UNION EXECUTIVE BODY 1990-91



Sitting (L to R) Prof. N. Beriha Dr. A. K. Das (Vice Principal) Prof. P. K. Bose (Adviser) Prof. G. Das (Principal) Sri Rajesh Mohapatra (President) Prof. U. Thakur, Prof. K. Sahoo, Prof. T. Mohanty
Standing (L to R) Sri Amitav Thakur (Secy.) Sri Subrajit Barua (+2 Cultural Secretary) Sri Prasant Samal (Vice President)

Digitized by PPRACHIN, SOA

# ବିବାହ ବାର୍ଷିକୀ

• କବିତା ବାରିକ

କେତେବର୍ଷ ହୋଇଗଲା ସେମାନଙ୍କର ବିବାହ ? କେତେବର୍ଷ ? ହଁ ତ, କାଲି ତାଙ୍କର ପଚିଶ ବର୍ଷ ପୂରିଯିବ । ଦୀର୍ଘ ପଚିଶ ବର୍ଷ । କେତେ ଶୀଘ୍ର ଦିନସବୁ ପାରି ହୋଇଗଲା ! କାଲିର ଦିନଟିକୁ ଭଲଭାବରେ ପାଳିବା ପାଇଁ ରୁନା ଯାଇଛନ୍ତି ଗ୍ରକରକୁ ନେଇ ବଜାର । କେକ୍ ସେ ଆଜି ଘରେ ତିଆରି କରିବେ । ସକାଳେ ବନ୍ଧୁମାନଙ୍କୁ ଘରଘର ଯାଇ ନିମନ୍ତ୍ରଣ କରି ଆସିଛନ୍ତି ।

ଦେଖୁ ଦେଖୁ ପଚିଶ ବର୍ଷ ପୂରିଗଲା । କାଲିଭଳି ଲାଗୁଛି । ସିଗାରେଟ୍ ଧରାଇଲେ ଶ୍ରୀକାନ୍ତ । ଗୋଟାଏ ପରେ ଗୋଟାଏ ସିଗାରେଟ୍ ଜଳିଗଲା ଭଳି ଜୀବନର ପ୍ରତିଟି ବର୍ଷ ନିଃଶେଷ ହୋଇ-ଯାଇଛି । ସିଗାରେଟର ଧୂଆଁ ଝାଡ଼ିଦେଇ ପୁଣି ଆଉ-ଗୋଟେ ସିଗାରେଟ ଧରାଇଲା ଭଳି ସେ ଗୋଟାଏ ପରେ ଗୋଟାଏ ବର୍ଷକୁ ଝାଡ଼ିଦେଇ ଆଉ ଏକ ବର୍ଷର ପାହାଚ ଉପରେ ଚଢିବାର ପ୍ରୟାସ କରିଛନ୍ତି ।

ଏଇ ସେଇଦିନ ଭଳି ଲାଗୁଛି । ରୁନାଙ୍କ ସହ ତାଙ୍କର ପ୍ରଥମ ସାକ୍ଷାତ୍ ହୁଏ । ଜୀବନର ପ୍ରଥମ ଚାକିରୀ ସେ ପୁଣି ଅଧ୍ୟାପନା । ପ୍ରଥମ ଦିନ କ୍ଲାସ ନେଲା ବେଳେ ଆଗ ଧାଡ଼ିରେ ବସିଥିବା ରୁନାଙ୍କ ପ୍ରତି ସେ ଆକୃଷ୍ଟ ହୁଅନ୍ତି । ରୁନା ବି ତାଙ୍କ ପାଖରେ କ'ଣ ଦେଖିଥିଲେ କେଜାଣି ସେ ବି କମ୍ ଆକୃଷ୍ଟ ହୋଇ ନ ଥିଲେ ତାଙ୍କ ପ୍ରତି । କିନ୍ତୁ ଏକମାତ୍ର ଝିଅ ରୁନାକୁ ଜଣେ ସାଧାରଣ ଅଧ୍ୟାପକ ହାତରେ ଟେକି ଦେବାକୁ ରୁନାଙ୍କ ଇଞ୍ଜିନିୟର ବାପା ଆଦୌ ରାଜି ହେଲେ ନାହିଁ । ତାଛଡ଼ା ସେମାନଙ୍କର ଜାତି ହିଁ ମୁଖ୍ୟ ସମସ୍ୟା ହୋଇ ଠିଆହୋଇଥିଲା । ଯାହାକୁ କି ଦୁଇ ପରିବାରରେ କେହି ଗ୍ରହଣ କରି ନ ଥିଲେ । ଶେଷରେ ସେମାନେ ସହର ଛାଡ଼ି କୋର୍ଟରେ ରେଜେଷ୍ଟ୍ରି ମ୍ୟାରେଜ କରି ନେଇଥିଲେ । ସେ ଆଜକୁ ପଚିଶ ବର୍ଷ ତଳର କଥା ।

ଏ ବାହାଘରେ ନା ବେଦୀ ଥିଲା, ନା ବାଜା ବାଜିଥିଲା । କେହି ଜଣେ ବି ଆତ୍ମୀୟ ଆଶୀର୍ବାଦ କରି-ବାକୁ ନଥିଲେ । ରୁନା କିନ୍ତୁ ତାଙ୍କୁ ଆତ୍ମପ୍ରତ୍ୟୟ ଦେଇଥିଲେ, ଆମର ଗୋଟେ ପିଲା ହୋଇଗଲା ପରେ ଦେଖିବ ବାପା ନିଶ୍ଚେ ତରଳି ଯିବେ । ନାତି କି ନାତୁଣୀ ଦେଖି ବାପା କେବେ ବି ଥୟ ଧରି ପାରିବେନି । ଅଜଣା ହୋଟେଲରେ ତାଙ୍କର ଚତୁର୍ଥୀ ପାଳିଥିଲେ । ବଜାରରୁ ଫୁଲ କିଣି ଆଣି ନିଜେ ଚୁନ ବିଛଣା ସଜାଇ ଥିଲେ । ସେଦିନ ଶ୍ରୀକାନ୍ତ ଦେଖି-ଥିଲେ ରୁନାଙ୍କ ଆଖିକୋଣରେ ଲୁହ ଭର୍ତ୍ତି ହୋଇ ଆସୁଛି । ରୁନା କ'ଣ ସୁଖୀ ନୁହଁନ୍ତି । ପଚାରି ଦେଇଥିଲେ । ରୁନା କୈଫିୟତ ଦେଇଥିଲେ, ତୁମବିନା ଯେ ଜୀଇଁହୁଏ - ମୁଁ କଳ୍ପନା କରିପାରୁ ନାହିଁ ଶ୍ରୀକାନ୍ତ ।

Digitized by PPRACHIN, SOA

-ତେବେ ଏ ଲୁହ ?

-ରୁନା ହସିଥିଲେ, ହଁ ଶ୍ରୀକାନ୍ତ ! ଲୁହ, ଆନନ୍ଦର ଲୁହ । କିଛି ପାଇବାର ଓ କିଛି ହଜାଇ ଦେବାର ଲୁହ । କୁହତ, କେହି ଝିଅ କଣ ଭବିଥାଏ ତା ବାହାଘର ବେଦୀରେ ହେବନି ବୋଲି । ବାପା ମା-କେହି ଆସିବେନି ? ଶ୍ରୀକାନ୍ତ ! କେହି କଣ କେବେବି ଭବିଥାଏ ତାର ଚତୁର୍ଥୀ ପାଳନ କରଯିବ କୌଣସି ଏକ ଅଜଣା ସହରର ହୋଟେଲର କ୍ୟାମେରା ଭିତରେ ? ଯାହାକୁ କି ନିଜେ ସେ ନିଜ ହାତରେ ସଜାଇବ !

ପଚିଶ ବର୍ଷ ତଳେ ରୁନାଙ୍କର ଏଇ କେତୋଟି ଧାଡ଼ି ତାଙ୍କୁ ଆଜି ବି ମନେଅଛି । ଗୋଟାଏ ଶବ୍ଦ ବି ଭୁଲି ପାରିନାହାଁନ୍ତି ଶ୍ରୀକାନ୍ତ ।

ରୁନା ଠିକ୍ କହିଥିଲେ । ସତକଥାତ ଏମିତି ଏକ ହୋଟେଲରେ ଏକ ଅଜଣା ସହରରେ ସେ ଯେ ତାଙ୍କ ଜୀବନର ପ୍ରସ୍ତୁତି ଆରମ୍ଭ କରିବେ ଏକଥା କ'ଣ କେବେ ବି ଜାଣିଥିଲେ ? ସମାଜ, ଜାତି ଆଉ ପ୍ରତିପତ୍ତି, ଆଭିଜାତ୍ୟ ମଣିଷକୁ କେତେ ଦୂରକୁ ଠେଲିଦିଏ । ଏସବୁ ପାଖରେ ନିର୍ମଳ ଭଲ ପାଇବାଟା କେତେ ଗୌଣ ହୋଇ ନ ଯାଏ !

ସେଦିନ ଶ୍ରୀକାନ୍ତ ଲୁହ ପୋଛିଦେଇ କହିଥିଲେ, ରୁନା ! ଆମ ମଧୁଶଯ୍ୟା ତୁମ ଲୁହରେ ଆହୁରି ପବିତ୍ର ହୋଇଯାଉ । ମୁଁ ତମକୁ ବାଧା ଦେବିନି, ଅଭିମାନ କରିବିନି । ଏମିତି ଏକ ଦିନରେ ତମେ କାନ୍ଦିବନି ତ ଆଉ କେବେ କାନ୍ଦିବ !

ଆଉ ତା, ପରେ ?

ତାଙ୍କର ତେଲଲୁଣର ସଂସାରରେ ଦୁହେଁ ଦୁହିଁଙ୍କୁ ବୁଝିବାର ପ୍ରୟାସ କରିଛନ୍ତି । ପରସ୍ପରକୁ ସାହାଯ୍ୟ ଦେଇଛନ୍ତି । ପ୍ରଥମ ବିବାହ ବାର୍ଷିକୀକୁ କେତେ ଆଦର ସହକାରେ ସେମାନେ ପାର୍କ ନ ଥିଲେ ! ନିଜେ କେକ୍ କାଟିଥିଲେ ରୁନା । ଦୁହେଁ ମହମବତୀ ଲିଭାଇ ଥିଲେ । ଦେଖୁ ଦେଖୁ ପୁଣି ଗୋଟାଏ ବର୍ଷ ଗଳିଗଲା । ବାପ ଘରର ସମସ୍ତ ଆତ୍ମୀୟଙ୍କ ସହିତ ଆତ୍ମୀୟତା ଯୋଡ଼ିବା ପାଇଁ ରୁନା ପିଲାଟିଏ ପାଇଁ ବ୍ୟସ୍ତ ହୋଇ ପଡ଼ିଲେ । ନମୁନା ସ୍ୱରୂପ ସେ ଛୋଟ ଛୋଟ ମୋଜା, ଟୋପି, ସ୍ୱେଟର ବୁଣିବା ଆରମ୍ଭ କରି ଦେଇଥିଲେ । ଶ୍ରୀକାନ୍ତଙ୍କୁ ବାରମ୍ବାର ପଚାରୁଥିଲେ କୁହତ, ଆମର ପୁଅ ନା ଝିଅ ହେବ ?

ରୁନା ପୁଅ ଖୋଜିଲା ବେଳେ ଶ୍ରୀକାନ୍ତ ଝିଅ ବୋଲି କହି ତାଙ୍କୁ ଚିଡାଇ ଦିଅନ୍ତି । ଏମିତି ଭବରେ ତିନିବର୍ଷ ବିତିଗଲା । ଏଥର ରୁନା ଅସ୍ଥିରତା ପ୍ରକାଶ କଲେ । କଥାଟାକୁ ଶ୍ରୀକାନ୍ତ ଆଦୌ ଗୁରୁତ୍ୱ ଦେଉ ନ ଥିଲେ, କିନ୍ତୁ ରୁନାଙ୍କ ବ୍ୟାକୁଳତା ଯୋଗୁଁ ଦୁହିଁଙ୍କର ମେଡ଼ିକାଲ୍ ଚେକ୍ଅପ୍ ଆରମ୍ଭ ହେଲା । ରୁନାଙ୍କର କିଛି ଅସୁବିଧା ନଥିଲା । କିନ୍ତୁ ଶ୍ରୀକାନ୍ତ......... । ଡାକ୍ତରଙ୍କ ରିପୋର୍ଟ ଅନୁସାରେ ସେ ରୁନାଙ୍କୁ କେବେବି ମାତୃତ୍ୱ ଦେଇ ପାରିବେନି । କାହିଁକି ନା, ......... କାହିଁକିନା ତାଙ୍କର.........ନା ସେହି ଭୟଙ୍କର ସତ୍ୟ-ଟାକୁ ଡାକ୍ତରଙ୍କ ମୁହଁରୁ ଶୁଣିବା ଆଗରୁ ଶ୍ରୀକାନ୍ତ ଚ୍ୟାମ୍ବରରୁ ଏକ ପ୍ରକାର ଧାଇଁ ପଳାଇ ଆସିଥିଲେ ।

ରୁନାଙ୍କୁ ଏଡ଼େ ନିଷ୍ଠୁର ସତ୍ୟଟା କେମିତି ଦେବେ ଠିକ୍ କରି ପାରି ନଥିଲେ ଶ୍ରୀକାନ୍ତ । ପ୍ରକୃତରେ ତାଙ୍କୁ ସେ କଣ ଦେଲେ ? ବରଂଚ ତାଙ୍କୁ



Digitized by PPRACHIN, SOA

ତାଙ୍କର ବାପା ମା, ଜ୍ଞାତିକୁଟୁମ୍ବ ସମସ୍ତଙ୍କ ଠାରୁ ଛଡାଇ ଆଣିଲେ । ସେହି ଜ୍ଞାତିକୁଟୁମ୍ବ ମାନଙ୍କ ସହିତ ସମ୍ପର୍କ ଯୋଡିବା ପାଇଁ ରୁନା ପିଲ୍ଲଟିଏ ଲାଗି ଦିନଗଣି ଚାଲିଛନ୍ତି । ଆଶାୟୀ ହୋଇ ବସିଛନ୍ତି । ସେ ଏତେ ହତଭାଗ୍ୟ ଯେ ରୁନାଙ୍କର ଏହି ପ୍ରଥମ ଅଥଚ ଶେଷ ମାଗୁଣି ପୂରଣ କରି ପାରିବେନି । ରୁନା ଏହା ଶୁଣିବା ପରେ ଆତ୍ମହତ୍ୟା କରିବେନିତ ? ସେ ନିଜେ ବି ଏହାପରେ ଆତ୍ମହତ୍ୟା କରିବେ କି ? ନା-ରୁନାଙ୍କୁ ସେ ଜାଣିଶୁଣି ବୈଧବ୍ୟ ଦେବେନାହିଁ କେବେ । ତାଙ୍କ ବିନା ରୁନା କେମିତି କାଟିବେ ଏତେବଡ ଲମ୍ବା ଜୀବନ ? କିଛି ନ ହେଲେବି ତାଙ୍କୁ ଟୋପାଏ ସିନ୍ଦୁରତ ଦେଇ-ଛନ୍ତି ସେ । ହେଲେ ଏଇ ସତ୍ୟଟାକୁ କେତେଦିନ ସେ ଲୁଚାଇ ରଖିବେ । କେତେଦିନ ରୁନା ଏକ ଆଗନ୍ତୁକର ପଦଧ୍ୱନି ପାଇଁ ଦିନ ଗଣୁଥିବେ ? କେତେ ହଳ ମୋଜା, ଟୋପି, ସୁଏଟର ବୁଣି ଚାଲିଥିବେ ?

ଏ ଭିତରେ ତାଙ୍କର ବିବାହବର୍ଷ ଚତୁର୍ଥ ପାହାଚରେ ପାଦ ଥୋଇଥିଲା । ତା ସହିତ ଅସହ୍ୟ ଅବ୍ୟକ୍ତ ବେଦନାରେ ଭାଙ୍ଗି ପଡୁଥିଲେ ଶ୍ରୀକାନ୍ତ । ରୁନାଙ୍କର ପ୍ରଶ୍ନଭରା ଆଖି ଆଉ ନିରବ ଅଭିଯୋଗ ତାଙ୍କୁ କ୍ଷତାକ୍ତ କରି ପକାଉଥିଲା ।

ଅବଶେଷରେ ଦିନେ ସେହି ଭୟଙ୍କର ସତ୍ୟ ଶୁଣାଇବାକୁ ପଡ଼ିଲା ତାଙ୍କୁ । ରୁନା ଚୁପ୍ ଚାପ୍ ଶୁଣୁ-ଥିଲେ । କିଛି ବି କହି ନ ଥିଲେ । ତାଙ୍କର ବଡ ବଡ ଆଖି ଦୁଇଟି ନରମି ଆସିଥିଲା । ଧୀରେ ଧୀରେ ସେ ଆଖିବୁଜି ନେଇଥିଲେ । ଠପ୍ ଠପ୍ କେଇଟୋପା ଲୁହ ତାଙ୍କ ଆଖିରୁ ଝରି ପଡ଼ିଥିଲା । ମୁହଁ ବୁଲାଇ ନେଇ କୋହସବୁ ଲୁଚିବାକୁ ଚେଷ୍ଟା କରୁଥିଲେ ରୁନା, ଠିକ୍ ଅଜଣା ସହରର ସେଇ ହୋଟେଲର ବନ୍ଦ କୋଠରି ଭିତରେ ନିଜର ଅଭିସାର ରାତିର "ସ୍ମୃତି" ଭଳି । ସେଦିନ ସିନା ସେ ପ୍ରକାଶ୍ୟରେ କାନ୍ଦିଥିଲେ । କିନ୍ତୁ ଆଜି ? ନା......... ସେ ଶ୍ରୀକାନ୍ତକୁ ଅପମାନିତ କରି-ବାକୁ ଚାହୁଁ ନ ଥିଲେ । ନିରବରେ ଉଠିଯାଇ କେବଳ ଭିତରୁ କବାଟ ବନ୍ଦ କରିଦେଇଥିଲେ । ବନ୍ଦ କବାଟକୁ ଚାହିଁ ସିଗାରେଟ୍ ପରେ ସିଗାରେଟ୍ ସେଦିନ ଟାଣି ଚାଲିଥିଲେ ସେ । ଜୀବନର ଏତେ ସ୍ୱପ୍ନ, ଏତେ ସମ୍ଭାବନା ସତେକି ସିଗାରେଟ୍ ଭଳି ପାଉଁଶ ହୋଇ-ଯାଇଥିଲା ।

ରୁନା ତାପରେ ଶାନ୍ତ, ସ୍ଥିର, ନରମ ଘାସ ଗଛଟିଏ ପାଲଟି ଗଲେ । ଏତେ ଧୈର୍ଯ୍ୟ ଆଉ ତ୍ୟାଗ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ ଶ୍ରୀକାନ୍ତ । ରୁନା ତାଙ୍କୁ ଥରେ ବି ନପୁଂସକ, ଅଣପୁରୁଷ ବୋଲି ଭର୍ତ୍ସନା କରି ନ ଥାନ୍ତେ । ତମକୁ ବାହାହେଇ ମୁଁ ଭୁଲ କରିଛି ବୋଲି କହି ନ ଥାନ୍ତେ । ଅନେକ ସମୟ କବାଟ ବନ୍ଦ୍ କରି କଣ କହୁଥିଲେ ସେଦିନ ରୁନା, କାନ୍ଦୁଥିଲେ ନା ନିଜକୁ ଅଭିଶାପ ଦେଉଥିଲେ ? ନାରୀଟିଏ ଏତେ ନୀଳକଣ୍ଠୀ ହୋଇପାରେ ?

ଶ୍ରୀକାନ୍ତ ତା ପରେ ଦେଖିଛନ୍ତି, ରୁନା କେମିତି ବୁଣିଥିବା ଛୋଟ ଛୋଟ ମୋଜା, ଟୋପି, ସୁଏଟରକୁ ବିଳାଇ ଦେଇଛନ୍ତି । ଘରର ଝର୍କା ସେପଟ ଖେଳ ପଡିଆରେ ଖେଳୁଥିବା ପିଲାମାନଙ୍କୁ ଚାହିଁଲେ କାଳେ କିଛି ଭବାନ୍ତର ଆସିବ ବୋଲି ସେ ତାଙ୍କ ଆଗରେ ଝରକା ବନ୍ଦ୍ କରି ଦିଅନ୍ତି । ଅଥଚ କ୍ଲାସ ନ କରି କିମ୍ବା ହଠାତ୍ ଛୁଟି ହେଇଗଲେ କେଉଁ ଦ୍ୱିପହରରେ ଯଦି ଶ୍ରୀକାନ୍ତ ରୁନାଙ୍କ ଅଜାଣତରେ ଘରକୁ ଫେରିଆସନ୍ତି ରୁନାଙ୍କ ଅଭିନୟ ଧରା ପଡ଼ିଯାଏ । ସେତେବେଳେ ଝରକା ଖୋଲାଥାଏ, ପର୍ଦ୍ଦା ଉଠାଯାଇଥାଏ ।



Digitized by PPRACHIN, SOA

ଝରକାର ରେଲିଂ ଧରି ରୁନା ଠିଆ ହୋଇଥାନ୍ତି । ଝରକା ସେପଟେ ବିସ୍ତାରି ଥାଏ ଖାଁ ଖାଁ ଟାଙ୍ଗର ପଡ଼ିଆ । ପିଲମାନେ ସନ୍ଧ୍ୟାବେଳେ ପ୍ରତିଦିନ ଖେଳିବା ହେତୁ ଘାସ ନ ଥାଏ ସେଠି । କ'ଣ ଦେଖୁଥାନ୍ତି ରୁନା ? ଏଇ ଯେମିତି... ... ତାଙ୍କ ଜୀବନଟା ବି ଗୋଟାଏ ପଡ଼ିଆ, ନା ଘାସ ଉଠିବ ନା ଫୁଲ ଫୁଟିବ । ଝରକା ସେପଟର ଜୀବନ ଯେ ଏତେ ଲମ୍ବା, ଏତେ ନିଛାଟିଆ କେମିତି କଟାଇବେ ବୋଲି ରୁନା ବୋଧହୁଏ ଠିକ କରି ପାରନ୍ତିନି । ଶ୍ରୀକାନ୍ତଙ୍କ ଉପସ୍ଥିତି ଜାଣିଲାପରେ ସେ ଚମକି ପଡନ୍ତି, ଆଖିର ବର୍ଷାକୁ ଫାଙ୍କି ଦେଇ ପାରନ୍ତିନି । ତାଙ୍କ ଛାତିରେ ଶ୍ରାବଣୀ କନ୍ୟା ପାଲଟି ଯାଆନ୍ତି ।

ତା, ପରେ ପୁଣି ସେ ଟିକି ଝିଅଟି ଭଳି ପ୍ରଗ୍‌ଲଭ, ଚଞ୍ଚଳା ହୋଇ ଉଠନ୍ତି । କ୍ଷଣିକ ଆଗରୁ ଥିବା ସେହି ଅସମ୍ଭବ ସ୍ଥିରତା, ନିର୍ଜନତା ଗ୍ରଲି ଯାଇ-ଥାଏ । ଦିଜଣ ଚିୟର୍ସ କରି କଫି ପିଅନ୍ତି, ମିକ୍‌ସଚର ଗ୍ରେବାନ୍ତି, ପିକ୍‌ଚର ଦେଖନ୍ତି, ଗୀତ ଶୁଣନ୍ତି । ଏମ୍ତି ଏମ୍ତି ହୋଇ ପାଣିସୁଅଭଳି କଟିଯାଇଛି ପଚିଶ ବର୍ଷ ।

କ'ଣ ହେବାକୁ ଗ୍ରହିଁଥିଲେ, କ'ଣ ହୋଇଗଲେ ସେମାନେ ? ସୁଖୀ ହେବାର, ସୁଖୀ କରଇବାର ପ୍ରଚେଷ୍ଟାରେ ସେମାନେ ଗୁଡ଼ାଏ ବର୍ଷକୁ ପାରି ହୋଇ-ଯାଇଛନ୍ତି । ପୁଅଝିଅ ଥିଲେ ଆଜି କଲେଜ ପଢା ସେମାନଙ୍କର ସନ୍ତାନ । ଝିଅ ହୁଏତ ବାହା ହୋଇ ସାରିଥାନ୍ତା । ନାତି ନାତୁଣୀ ଦେଖି ଦୁହେଁ ଖୁସୀରେ ଉବୁଟୁବୁ ହେଉଥାନ୍ତେ । ହେଲେ ମଣିଷର ଇଚ୍ଛାତ ଆଉ ଭଗବାନଙ୍କର ଇଚ୍ଛାନୁହେଁ । ପଚିଶ ବର୍ଷ ତଳେ ଯୁବକ ଶ୍ରୀକାନ୍ତ ଓ ଯୁବତୀ ରୁନା ଯେଉଁ ସ୍ୱପ୍ନ ଦେଖି-ଥିଲେ; ଆଜି ସେ ସ୍ୱପ୍ନର ମୃତ୍ୟୁ ହୋଇପାଇଛି ।

କେବଳ ବିବାହ ବାର୍ଷିକୀର ଗୋଟାଏ ଲେଖାଁ ମହମ-ବତୀ ବଢି ଯାଇଛି ଯାହା ।

କାଲି ତାଙ୍କର ବିବାହର ରୌପ୍ୟ ଜୁବୁଲି ପାର୍ଳିତ ହେବ । ହୁଏତ ଆରବର୍ଷ ଏଇ ଦିନରେ ଦୁହେଁ ଥିବେ କି ନାହିଁ କିଏ କହି ପାରିବ । ତାଙ୍କ ଜୀବନର ଅବିସ୍ମରଣୀୟ ଦିନଟିକୁ ସ୍ମରଣ କରିବା ପାଇଁ ରୁନା କାଲି ପଚିଶ ବର୍ଷ ତଳର ଶାଢ଼ୀଟା ପିନ୍ଧିବେ । କ୍ଷଣକ ପାଇଁ ଦୁହେଁ ପଚିଶ ବର୍ଷ ତଳକୁ ଖସିଯିବେ । ରୁନା କେକ୍ କାଟିବେ, ସେ ପଚିଶଟି ମହମବତୀ ଜଳାଇବେ, ବନ୍ଧୁ ମାନଙ୍କର ତାଳି ପଡ଼ିବ । ତାପରେ ଶୁଭେଚ୍ଛା ପରେ ଶୁଭେଚ୍ଛା, ଗ୍ରମଚ ପ୍ଲେଟର ଗୁଞ୍ଜନ, ଗଜଲର ସ୍ତିମିତ ସ୍ୱର । ଅତିଥିମାନେ ଧୀରେ ଧୀରେ ବିଦାୟ ନେଇଯିବେ । ଗ୍ରକର ପିଲଟି ସହିତ ରୁନା ଖାଲିପ୍ଲେଟ, ଗ୍ଲାସ ଗ୍ରମଚ ଉଠାଇବେ । ଅନ୍ଧାରରେ ଠିଆହୋଇ ସେ ରୁନାଙ୍କୁ ଦେଖୁଥିବେ ଆଉ ଭାବୁଥିବେ ପଚିଶ ବର୍ଷ ତଳର ସ୍ୱପ୍ନ, ଆବେଗ, କଳ୍ପନା, ବୟସ କୁଆଡେ ଗଲ ? ଆଜି ଦୁହେଁ ଯେଉଁ ଛକରେ ପହଞ୍ଚି ଯାଇଛନ୍ତି ମନେ ହେବ ତାହା ଯେମିତି ଏକ "ଭୁଲର" ଠିକଣା । ଦୁହେଁ ଦୁହିଁଙ୍କ ପାଖରେ ରହିବି ଦୂରତ୍ୱକୁ ଅଜାଣତରେ ବଢାଇ ଦେଇଛନ୍ତି । ଜୀବନ-ସାର କେବଳ ସୁଖୀ ହେବାର ଛଳନା କରିଛନ୍ତି ।

ଏଇୟା ହେବ ବୋଲି ତ ତାଙ୍କର ସ୍ୱପ୍ନ ନ ଥିଲ । ବିବାହ ବାର୍ଷିକୀରେ ରଂଗ ଛିଞ୍ଚିବା ପାଇଁ କ'ଣ ସେମାନେ ଜନ୍ମ ହେଇଥିଲେ ? ଶ୍ରୀକାନ୍ତ ନିଜ ସହିତ କଥା ବାର୍ତ୍ତା ଆରମ୍ଭ କରିଛନ୍ତି; ରୁନା ! ସେଦିନ ସିନା କହିଥିଲ ଯେ କୌଣସି ଝିଅ କେବେ ବି ଭାବି ନଥାଏ ତା ଜୀବନର ପ୍ରଥମ ସ୍ମରଣୀୟ ରତି ପାର୍ଳିତ ହେବ କୌଣସି ହୋଟେଲର ବନ୍ଦ୍ କ୍ୟାମେରରେ ବୋଲି । କିନ୍ତୁ କାହିଁକି କହିଲନି, କୌଣସି ବିବାହିତା ଝିଅ



Digitized by PPRACHIN, SOA

କ'ଣ ଭବିଥାଏ ସେ ମା' ହୋଇ ପାରିବନି କେବେ ବୋଲି ? କାହିଁକି କହି ଦେଲନି କୌଣସି ଝିଅ କ'ଣ ଭବିଥାଏ ତା ସ୍ୱାମୀ ତାକୁ ମାତୃତ୍ୱ ଦେଇ ପାରିବନି ବୋଲି ? କାହିଁକି କହିଲନି ରୁନା ? ମୋତେ ପଚିଶ ବର୍ଷ ଧରି ଗୋଟାଏ ଅପରାଧ ବୋଧରେ ଜଳାଇବାରେ ତୁମେ କ'ଣ ଆନନ୍ଦ ପାଉଥିଲ ? ତୁମର ଏତେ ତ୍ୟାଗ, ଏତେ ଧୈର୍ଯ୍ୟକୁ ମୁଁ ସହି ପାରୁନାହିଁ ରୁନା । ମୁଁ କେତେ ହତଭାଗ୍ୟ ସତରେ ତମର ଗୋଟାଏ ବି ଇଛା ପୂରଣ କରି ପାରିଲି ନାହିଁ ; ଜୀବନ ସହ ତମେ ଏ କି କମ୍ପ୍ରୋମାଇଜ କରି ନେଲ ତମେ ?

ତମକୁ ଦେଖି ମୋର କ'ଣ ମନେ ହୁଏ ଜାଣ ? ମଣିଷର ସବୁ ସ୍ୱପ୍ନ ସତ ହୁଏନା । ସବୁ କଳ୍ପନାର ମନ୍ଦିର ଚୂଡ଼ା ଛୁଏଁନା, ସବୁ ପାଇବା ଭିତରେ ଗୋଟାଏ କେମିତି "କିନ୍ତୁ" ରହିଯାଏ । ସେଥିପାଇଁ ତୁମଭଳି କିଛି ଭିନ୍ନ ଚରିତ୍ର ବାସ୍ତବତା ସହିତ ସାଲିସ୍ କରି ନିଅନ୍ତି । ରୁନା ! ଜୀବନର ପ୍ରଥମ ବିବାହ ବାର୍ଷିକୀ ପାର୍ଟିବା ଆଉ ପଚିଶ ବର୍ଷ ପରେ ବିବାହ ବାର୍ଷିକୀ ପାର୍ଟିବା ଭିତରେ ବୋଧହୁଏ ଏଇ ଟିକକ ହିଁ ପାର୍ଥକ୍ୟ । ସେଥିପାଇଁ ବୋଧହୁଏ ତୁମଭଳି କିଛି ଚରିତ୍ର ଅଜାଣତରେ ସ୍ୱପ୍ନ ସମ୍ଭାବନାର ସିଡ଼ି ଚଢ଼ି ବିବାହ ବାର୍ଷିକୀର କେକ୍ କାଟନ୍ତି, ମହମ ବତୀ ଲିଭନ୍ତି ଆଉ ସ୍ମୃତିର ପୃଷ୍ଠା ଓଲଟାଉ ଓଲଟାଉ ଦେଖି ଦେଖି ବୁଢ଼ା ବୁଢ଼ି ପାଲଟି ଯାଆନ୍ତି ।

ଅଧ୍ୟାପିକା, ଓଡ଼ିଆ ବିଭାଗ
ସରକାରୀ ମହାବିଦ୍ୟାଳୟ
ରାଉରକେଲା

୦O୦

# ମା'

● ମାଳବିକା ସାମଲ
ତୃତୀୟ ବାର୍ଷିକ ଅର୍ଥନୀତି ସମ୍ମାନ

ପାହାଡ଼ ସେପଟ ମୁଣ୍ଡିଆରୁ ଧୂଆଁ ଉଠିଲଣି । ବୋଧହୁଏ ବସ୍ତିମାନଙ୍କରେ ଚୁଲି ଲଗିଲଣି । ଶାନ୍ତ ସରଳ ଏଠିକାର ମଣିଷମାନେ । ଆଉ ଟିକିଏ ପରେ ଖିଆପିଆ ସାରି ନିଦ୍ରାଦେବୀ କୋଳରେ ଆଶ୍ରୟ ନେବେ ।

ଝରକା ଦେଇ ମହୁଲର ମନମତାଣିଆ ବାସ୍ନା ପଶି ଆସୁଛି । ତା ସାଙ୍ଗକୁ ରହି ରହି କାନରେ ବାଜିଯାଉଛି ପଲ୍ଲୀନୃତ୍ୟ ଓ ସଙ୍ଗୀତର ଝଙ୍କାର ।

—'ବାବୁ... ... ... ... ଘ' ।

Digitized by PPRACHIN, SOA

—'ଓଃ ଲିବ୍‌ନୁସ୍‌, ରଖିଦେ ଟେବୁଲ ଉପରେ' ।
ସେ ଚାଲିଯାଉଥିଲା, ଅଟକାଇ କହିଲି—

—'ଶୁଣ୍‌ ... ... ଯାଉଛୁ କୁଆଡେ ? ବସ୍‌ ସେଇଠି' । —'ଆଜ୍ଞା କ'ଣ ସବୁଦିନେ ସେଇଠି ନାଚ ଗୀତ ହୁଏ' ?

—'ହଇ ଆଜ୍ଞା, ଦିନ୍‌ ସାରା ଥକି ଥକି ସଞ୍ଜେ ଟିକେ ନାଚ୍‌ସନ୍‌, ମୌଉଜ୍‌ କର୍‌ସନ୍‌ ।
ଆଜ୍ଞା ଯାଉଛେ ଆଜ୍ଞା, ମୋର ବୁଢି ମା' ବାଟ୍‌ ଜଗିଥିବା ।

—'ତୋ ମା' କ'ଣ ତୋତେ ବହୁତ୍‌ ଭଲ ପାଏ ଲିବ୍‌ନୁସ୍‌' ?

—'ହଇ ଆଜ୍ଞା' । କହିଦେଇ ସେ ଚାଲିଗଲା । ଆଉ ମନେପକେଇ ଦେଇଗଲା ଗାଁରେ ଛାଡ଼ି ଆସିଥିବା ମୋ ମା'ର କଥା ।

ତା ମୁହଁଟା ମୋ ଆଖିଆଗରେ ନାଚି ଉଠିଲା, ଶାନ୍ତ ସରଳ କେଡ଼େ କମନୀୟ ମୁହଁଟି । ମୁଁ ଆସିଲା ଦିନ ସେ କାନ୍ଦୁଥିଲା । କାନ୍ଦି କାନ୍ଦି କହୁଥିଲା, ଯୋ'ରେ ବାପା ଆଉ ଏଇ ଜୀବନରେ କ'ଣ ତୋ ସାଙ୍ଗରେ ଦେଖା ହେବ ।

ମୋତେ ବାଟେଇ ଦେବାକୁ ଆସି, କେତେ ଗୁଡାଏ ବାଟ ରିକ୍‌ସା ପଛେ ପଛେ ଆସିଥିଲା । ବିଚ୍ରା ମା' ଗାଁରେ ଏକୁଟିଆଟା ପଡ଼ିଛି । ପଦେ କଥା ହେବାକୁ, ପାଖରେ ନିଜର ବୋଲି କେହି ନାହାଁନ୍ତି । ପୁଅ, ବୋହୂ, ନାତି, ନାତୁଣୀ ସମସ୍ତେ ବାହାରେ । ଆଉ ଜେଜେବାପା ତ ବହୁତ ଆଗରୁ ଚାଲି ଯାଇ-ଛନ୍ତି । ସବୁ ଥାଇବି ସେ ଏକୁଟିଆ ।

ମାଟ୍ରିକ୍‌ ପରୀକ୍ଷା ପରେ, ଡିସେମ୍ବର ମାସରେ, ବାପା, ବୋଉ ସମସ୍ତଙ୍କର ମନାସତ୍ତ୍ୱେ ଯେଉଁଦିନ ପ୍ରଥମ କରି ଗାଁକୁ ଯାଇଥିଲି, ବଡ଼ ଅଡୁଆ ଲାଗିଥିଲା । ମୁଁ କୁଆଡେ ଛୋଟ ଥିଲାବେଳେ ମା' ମୋର ସବୁ କରିଥିଲା; ମା' ମୋତେ ଚିହ୍ନିବ କି ନାହିଁ, ମୁଁ ମା' କୁ କ'ଣ କହିବି, ଏମିତି କେତେ କ'ଣ ଭାବି ଚାଲିଥିଲି ।

ଦାଣ୍ଡ ଚଉପାଢି ପାଖରେ ରିକ୍‌ସାରୁ ଓହ୍ଲଉ ଓହ୍ଲଉ, ମା' ମୋତେ ଚିହ୍ନି ପକାଇ ଥିଲା । କିରେ ସିଦ୍ଧାନ୍ତ କିରେ, କହୁ କହୁ କୁଣ୍ଢାଇ ପକାଇଲା । କଇଁ କଇଁ ହୋଇ କାନ୍ଦୁଥିଲା, କହୁଥିଲା, କୁଆଡେ ଗଲା ତୋର ପିଲାବେଳ ଚେହେରା, ମୁହଁଟା ଶୁଖି ଠାକରା ହୋଇଗଲାଣି । କ'ଣ ଖାଇବୁ କ'ଣ ପିଇବୁ, କ୍ଷୀର ଟିକେ ପିଇଦେ, ଏଠିତ ଆଉ କିଛି ମିଳିବନି, ଆହୁରି କେତେ କ'ଣ । ମା' ଆଗରେ ପିଲା ଯେତେ ବଡ ହେଲେବି ସେମିତି ପିଲା ।

ମୁଁ ଖାଲି ମୂକ ଭଳି ମା'କୁ ଅନେଇ ଥିଲି । ତା'ର ପାଦଧୂଳି ନେବାକୁ ବି ଭୁଲି ଯାଇଥିଲି । ସତରେ ଆଗରୁ କାହାକୁ କେବେ ଏତେ ଖୁସି ହେବାର ମୁଁ ଦେଖି ନଥିଲି । ଏତେ ସ୍ନେହ କେବେ ପାଇ ନଥିଲି ।

—''ରେ ଦାମ... ......ରେ ନିଧି... ... ... କୁଆଡେ ଗଲସବୁ । ଆରେ ଶୀଘ୍ର ଆସରେ'' ।
—''କ'ଣ ହେଲକି ମା,' କାହିଁକି ଏମିତି ରଡ଼ି ଚହଳ ପକେଇଛ ?''

—''ଦେଖି ପାରୁନ କି, ସିଦ୍ଧାନ୍ତ ଆସିଛି ପରା । ମୋ ବଡ ପୁଅର ପୁଅ ମୋ ବଡ ନାତି, ବୁଝିଲୁ । ଚାଲୁ ଗୁଡ଼ିଆ ଦୋକାନରୁ ଟିକେ ଛେନାପୋଡ ଦିଟାଲବୁ,



Digitized by PPRACHIN, SOA

କି କ'ଣ ଆଣିବୁ । ମୋ ପୁଅଟା କେତେ ଗୁଡେ ବାଟରୁ ଆସିଛି, ଭେକେଇବଣି !"

ସେଦିନ ରାତିରେ ମା' ଦାଣ୍ଡଘରେ ମୋ ପାଇଁ ବିଛଣା ପାରିଦେଲ । ମୁଁ ମା'କୁ ମୋ ପାଖରେ ଶୋଇବାକୁ ବାଧ୍ୟ କରିବାରୁ ମୋ ପାଖରେ ଶୋଇଲ । ରାତି ଅଧରେ ନିଦ ଭାଙ୍ଗିଲା ବେଳକୁ ଦେଖେତ ମା' ନାହିଁ । ଦୁଆର ବାରଣ୍ଡାରୁ ଧିରେ ଧିରେ ଖୁଁ ଖୁଁ କାଶିବାର ଶବ୍ଦ ଆସୁଥିଲା । ଯାଇଁ ଦେଖେତ ମା' ପାଟିରେ କନା ଜାକି କାଶୁଛି । ମତେ ଦେଖି ବହୁତ ବ୍ୟସ୍ତ ହୋଇଗଲ । କହିଲା -"ଏଥିପାଇଁ ପରା ତୋ ପାଖରେ ଶୋଉନଥିଲି । ଏ ନିଆଁଲଗା କାଶଟା କ'ଣ ତତେ ଟିକେ ଶୋଇଦେବ !"

ନିରବରେ ମୋ ଆଖିରୁ ଦୁଇଧାର ଲୁହ ଗଡ଼ିଆସିଲ । କେତେ ମହାନ୍ ସେ । ମୋର ନିଦରେ କାଳେ ବ୍ୟାଘାତ ଆସିବ ବୋଲି ଡ଼ିସେମ୍ବର ମାସର ହାଡଭଙ୍ଗା ଶୀତରେ ରାତିରେ ପଦାଟାରେ ବସି ମୁହଁରେ କନାଜାକି କାଶୁଛି ।

ଯା' ଭିତରେ କେତେବେଳେ ରାତି ହୋଇ ଗଲଣି, ମୋତେ ଜଣାନାହିଁ । ଉଠି ସୁଇଚ୍ ଅନ୍ କଲବେଳକୁ ରାତି ୯ଟା । ଖାଇବାକୁ ଆଉ ଇଚ୍ଛା ହେଉନି । ବାରଣ୍ଡାକୁ ବାହାରିଲି । ବେଶ୍ ତୋଫା ଜହ୍ନ ପଡ଼ିଛି । ରାତିଆଡେ ନିଃଶବ୍ଦ । ମଝିରେ ମଝିରେ ବାହାଦୁର୍‌ର ହୁଇସିଲ୍ ଶବ୍ଦ ସତର୍କ କରି ଦେଉଛି । ବିଶେଷ କରି ଏ ଜଙ୍ଗଲୀ ଇଲାକାରେ ଖୁବ୍ ଶୀଘ୍ର ରାତି ହୋଇଯାଏ । କିଛି ସମୟ ବାହାଦୁର ସହିତ କଥାବାର୍ତ୍ତା କଲପରେ, ମନଟା ଟିକେ ହାଲୁକା ଲାଗିଲ । ବିଛଣାରେ ଗଡ଼ପଡ ହୋଇ ଶୋଇବାକୁ ଚେଷ୍ଟା କଲି । ତା ପରେ କେତେବେଳେ ଯେ ଶୋଇ ଯାଇଛି ମତେ ଜଣାନାହିଁ ।

ସକାଳେ ଲିବ୍‌ନୁସ୍‌ର ଡାକରେ ନିଦ ଭାଙ୍ଗିଲା । ତରବର ହୋଇ ଉଠି ପଡ଼ିଲି । କର୍ତ୍ତବ୍ୟରେ ହେଳା କରିବା ଉଚିତ ନୁହେଁ, ଭାବି ଶୀଘ୍ର ଶୀଘ୍ର ଗାଧୁଆ ପାଧୁଆ ସାରି, ଜଳଖିଆ ଖାଇ ଅଫିସ୍ ଉଦେଶ୍ୟରେ ବାହାରି ପଡ଼ିଲି ।

ଠିକ୍ ଏତିକି ବେଳେ ଦୁଆରେ ପୋଷ୍ଟମ୍ୟାନ୍‌କୁ ଦେଖି ଖୁସିର ସୀମା ରହିଲା ନାହିଁ ।
"Sir telegram, telegram," ଆଶ୍ଚର୍ଯ୍ୟ ଲାଗିଲା ସେଥିରେ ଲେଖାଥିଲା "grand Mother Serious–Come soon." କ'ଣ ହୋଇଛି ମା'ର ? ମୋ ପାଦତଳୁ ସତେକି ମାଟି ଖସିଗଲା ।

ତେବେ ଯା'ହେଉ ସନ୍ଧ୍ୟା ଗାଡ଼ିରେ ଗାଁକୁ ଯିବାକୁ ନିଷ୍ପତ୍ତି କରିନେଲି । ସେଦିନ ଅଫିସରେ ଠିକ୍‌ଭାବେ କିଛି କରି ପାରିଲିନି । ଖାଲି ସନ୍ଧ୍ୟାବେଳକୁ ଅପେକ୍ଷା କରିଥାଏ ।

କୌଣସି ମତେ ଗାଁରେ ପହଞ୍ଚିଲା ବେଳକୁ ଦିନ ୧୦ଟା । ଦାଣ୍ଡରେ ଏଣେ ଗୁଡିଏ ଲୋକଙ୍କୁ ଦେଖି ମତେ ବହୁତ ବ୍ୟସ୍ତ ଲାଗିଲା । ସନ୍ଦେହ ହେଲା ମା' ତା ହେଲେ... ... ...ବାପା ଦୌଡ଼ିଆସି ମତେ କୁଣ୍ଢାଇ ପକାଇ ସେଇ ଭୟଙ୍କର ସତ୍ୟଟି ପ୍ରକାଶ କଲେ- "ମା' ତୋର ଚାଲିଗଲାରେ, ତୁ ଏତେ ହତଭାଗାଟା ଦେଖି ପାରିଲୁ ନାହିଁ ।

ମୁଁ ସ୍ଥାଣୁ ପାଲଟି ଯାଇଥିଲି । ମା'ର ଶୋଇଲା ଘରକୁ ଅଜାଣତରେ ଟାଣି ହୋଇଗଲି । ବିଛଣା



Digitized by PPRACHIN, SOA

ସେମିତି ପଡ଼ିଛି । ମା'ର ଲେଟା ବାଡ଼ି ସବୁ ଠିକ୍ ଜାଗାରେ ଥୁଆ ହୋଇଛି । ଖାଲି ମା' ସେଠି ନାହିଁ ।

ମା'ର ସେଇ କେଇପଦ କଥା ମତେ ଶୁଭୁଥିଲା -"ଯା'ରେ ବାପା, ଆଉ ଏ ଜୀବନରେ କ'ଣ ତୋ ସାଙ୍ଗରେ ଦେଖାହେବ ।"

"ମା'- - - - - ମା' "- - - -

—"ଆଉ ଟିକିଏ ଅପେକ୍ଷା କଲୁନି ମା' - - - ମତେ ଛାଡ଼ିଦେଇ ଗ୍ଲଲିଗଲୁ——— ।"ମୁଁ ପିଲାଙ୍କ ଭଳି କାନ୍ଦି ଉଠିଲି । କେତେବର୍ଷ ହେଲା କାନ୍ଦି ନଥିଲି ? କେତେବର୍ଷ ?

କାହାରି ସ୍ପର୍ଶରେ ଫେରି ଗ୍ଲହିଁଲି । ଠିଆ ହୋଇଥିଲେ ବାପା । ସାନ୍ତ୍ୱନା ଦେବା ଭଙ୍ଗିରେ ।

—o—

# ରିକ୍ସାବାଲା

● ସଞ୍ଜିବ କୁମାର ପୁରୋହିତ
+୨ ବିଜ୍ଞାନ ୨ୟ ବର୍ଷ

ଯଦିଓ ତାର ନାଆଁଟି ଅଛି ତଥାପି ତାକୁ ରିକ୍ସାବାଲା ବୋଲି ଡ଼ାକନ୍ତି । ରିକ୍ସାବାଲା କହିଲେ ସମସ୍ତେ ତାକୁ ହିଁ ବୁଝନ୍ତି । ସେ ନିଜେ ମଧ୍ୟ ନିଜର ନାମ 'ରିକ୍ସାବାଲା' ବୋଲି ଜାଣେ । ଏହାର କାରଣ କ'ଣ ? ସେ କ'ଣ ରିକ୍ସା ଚଳାଏ ବୋଲି 'ରିକ୍ସାବାଲା' ନାମରେ ପରିଚିତ । ରିକ୍ସା ହିଁ ତାର ସମ୍ବଳ ।

ରିକ୍ସାବାଲାଟି ପିତାମାତାଙ୍କ ଠାରୁ କେଡେ ଆଦରରେ 'ବିଶ୍ୱାମିତ୍ର' ନାମ ପାଇଛି । ମାତ୍ର ଏହି ଜଗତ ତାକୁ ବିଶ୍ୱାମିତ୍ର ଡାକିବାକୁ କୁଣ୍ଠାବୋଧ କରୁଛି । 'ରିକ୍ସାବାଲା କ'ଣ ତା ପାଇଁ ପ୍ରଯୁଜ୍ୟ । ସେ କ'ଣ ବିଶ୍ୱାମିତ୍ର ନାମ ପାଇଁ ଅଯୋଗ୍ୟ । ମହର୍ଷି ବିଶ୍ୱାମିତ୍ର କ'ଣ କେବଳ ବିଶ୍ୱର ମିତ୍ର ଥିଲେ । ଆଉ ସେ ରିକ୍ସାବାଲା ? ସେ କ'ଣ କରେ ? ସେ ମଧ୍ୟ ଜନସେବା କରେ । ତେଣୁ ସେ ବିଶ୍ୱାମିତ୍ର ନାମପାଇଁ ଅନୁପଯୁକ୍ତ ହେଲା କିପରି ? ଏଥିପାଇଁ କି ସେ ସେବା ବଦଳରେ ପଇସା ନିଏ । କ'ଣ ଏହା ହିଁ ତାର କାରଣ । ସେ ବା କରିବ କ,ଣ ? ସେଇହିଁ ତ ତାର ଜୀବିକା । ନ ହେଲେ ସେ ବଞ୍ଚିବ ବା କିପରି ? କ'ଣ ତା ଜୀବନ ସଗ୍ରାମ ପାଇଁ କେବଳ ରିକ୍ସା ହିଁ ଏକମାତ୍ର ଅସ୍ତ୍ର । ଏହା ସତ । ମାତ୍ର ଅସ୍ତ୍ର ଅନୁସାରେ ସୈନିକର ନାମ କରଣ ଆଜି କି ବିଡ଼ମ୍ବନା ।

—o—



Digitized by PPRACHIN, SOA

( ବ୍ୟଙ୍ଗ ରଚନା )

# ସ୍ୱପ୍ନର ଅନ୍ତରାଳେ

✿ କୁମାରୀ ବନଲତା ଧଳ
+୩ କଳାଛାତ୍ରୀ ୧ମ ବର୍ଷ

ମ୍ୟାଗାଜିନ ପାଇଁ ଲେଖାଟିଏ ଦେବି ଦେବି ବୋଲି ମନରେ ବହୁ ଇଚ୍ଛା ଥିଲେ ମଧ୍ୟ ମୁଁ ସେଥିରେ କେବେ ସଫଳ ହୋଇନାହିଁ । ମୋର ସହପାଠୀମାନେ ପ୍ରତିବର୍ଷ ମ୍ୟାଗାଜିନ୍ ପାଇଁ ଗଳ୍ପ କିମ୍ବା କବିତା ଲେଖନ୍ତି । ସେହି ଲେଖାଗୁଡ଼ିକୁ ମୁଁ ପଢ଼େ । ଆନନ୍ଦିତ ହୁଏ । ଆଉ ମନରେ ଈର୍ଷା ମଧ୍ୟ ହୁଏ । ସେମାନେ ଲେଖୁଛନ୍ତି ; ଅଥଚ ମୁଁ କାହିଁକି ଲେଖିପାରୁନି ? ଇଚ୍ଛା ଥାଇ ମଧ୍ୟ ମୁଁ କେବେ କିଛି ଲେଖି ପାରେନି । ଏହାର କାରଣ ହୁଏତ ସାହିତ୍ୟରେ ଥିବା ମୋର ଦୁର୍ବଳତା । ବହୁ କଷ୍ଟରେ ସାହିତ୍ୟରେ କେବଳ ପାସ୍ ନମ୍ବରଟି ରଖି ଉତ୍ତୀର୍ଣ୍ଣ ହୋଇଥିଲି । ଆଉ ସାହିତ୍ୟ କ୍ଲାସ୍ କଥା ମନେପଡ଼ିଲେ ଆଜି ମଧ୍ୟ ଦେହ ଶୀତେଇ ଉଠେ । ସାହିତ୍ୟ ଶିକ୍ଷକଙ୍କ ମାଡ଼ ଏବଂ ଭର୍ତ୍ସନା ଆଜି ପର୍ଯ୍ୟନ୍ତ ମୁଁ ଭୁଲିପାରିନି । ଯେଉଁଦିନ ସାହିତ୍ୟ କ୍ଲାସ ଥାଏ, ସେଦିନ ମନେକରେ ଆଜିମୋର ଶନିସପ୍ତା......... ।

ଦିନକର ଘଟଣା ଆଜି ବି ମୋତେ ଜଳ ଜଳ ହୋଇ ଦୃଶ୍ୟ ହେଉଛି । ସେଦିନ ପ୍ରଥମରୁ ସାହିତ୍ୟ କ୍ଲାସ ଥାଏ । ଶିକ୍ଷକଙ୍କ ଆସିବା ପୂର୍ବରୁ ଆମେ ସାହିତ୍ୟ ଖାତା ଗୁଡ଼ିକ ଟେବୁଲ ଉପରେ ରଖିଦେଇଥାଉଁ । ଶିକ୍ଷକ ପ୍ରବେଶ କଲେ, ଖାତା ଗୁଡ଼ିକ ଦେଖିଲା ପରେ ଶିକ୍ଷକ କହିଲେ :— "ନିଶିକାନ୍ଥ, କାନଧରି ବେଞ୍ଚ୍ ଉପରେ ଛିଡ଼ାହୁଅ ।" ଶିକ୍ଷକଙ୍କ କଥାରେ କ୍ଲାସରେ ଏକ ହସର ଲହରୀ ସୃଷ୍ଟି ହେଲା । ମୋତେ ବି ଶିକ୍ଷକଙ୍କ ଉଚ୍ଚାରଣ ଟିକେ କେମିତି କେମିତି ମନେ ହେଲା । ଭାବିଲି, ମୋ ନାଁ ତ ନିଶିକାନ୍ତ, ଶିକ୍ଷକ ମୋତେ ନିଶିକାନ୍ଥ କହିଲେ କାହିଁକି ? କେଉଁଠି ଆଉ ଭୁଲ୍ ରହିଗଲା କି ? ମନ କଥା ମନରେ ରଖି ଶିକ୍ଷକଙ୍କ ଆଦେଶ ପାଳନ କରି ଅଧୋମୁଖ ଅବସ୍ଥାରେ ଦଣ୍ଡାୟମାନ ହେଲି, ଶିକ୍ଷକ କହିଲେ— " ଗୋଟିଏ ଚଉଦ ବର୍ଷର ବାଳୁତ, 'ନ୍ତ' ଆଉ 'ନ୍ଥ' ମଧ୍ୟରେ ପାର୍ଥକ୍ୟ କ'ଣ ଜାଣିନାହଁ, ମୂର୍ଖ କୋଉଠିକା'ର । ଫଳା ଅକ୍ଷର ତ ଜାଣିନାହୁଁ, କି ପାଠ ପଢ଼ିବୁ ।" କ୍ଲାସରେ ହାସ୍ୟରୋଳ ସୃଷ୍ଟି ହୋଇଥିବା ବେଳେ ମୋର ମୁଣ୍ଡ ତଳକୁ ନଇଁ ଯାଇଥିଲା, ତାପରେ ସା'ର୍ ପଢ଼ା ଆରମ୍ଭ କଲେ । ସାହିତ୍ୟରେ ଦୁର୍ବଳ ଥିବା'ରୁ ଶିକ୍ଷକ ମୋତେ କ୍ଲାସରେ କାହିଁକି କେଜାଣି ବେଶୀ ପ୍ରଶ୍ନ ପଚାରନ୍ତି, ବୋଧହୁଏ ଅପଦସ୍ତ କରିବା ଉଦ୍ଦେଶ୍ୟରେ । ସେଦିନ ପଚାରିଲେ—— "ନିଶିକାନ୍ଥ ! କେଉଁ ପକ୍ଷୀ ଦିନବେଳା ଦେଖିପାରେ ନାହିଁ, କିନ୍ତୁ ରାତିରେ ଦେଖି ପାରେ ?"

ସେ ସମୟରେ ମୁଁ ଏତେ ଘାବରେଇ ଯାଇ— ଥିଲି ଯେ ଉତ୍ତର ଦେବାକୁ ଯାଇ ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା——"ଚେପ୍‌କୁ" ନା... ନା... ଗ୍ପେଚ୍କୁ... ନା... ନା... ପେଚ୍କୁ" ସେତେବେଳେ ମୋର ପରିସ୍ଥିତି ଯାହା ହୋଇଥିବ କଳ୍ପନା କରିପାରୁଥିବେ, ଛାଡ...... । କ'ଣ କହିବାକୁ ଯାଇ କେଉଁଠି ପହଞ୍ଚି

Digitized by PPRACHIN, SOA

ଗଲିଣି, ଯାହା ବି ହେଉ ମ୍ୟାଗାଜିନ୍ ପାଇଁ ଏଥର ଲେଖା ଦେବାକୁ ମୁଁ ସ୍ଥିର କଲି ।

କଲେଜରେ ନୋଟିସ୍ ବୋର୍ଡ଼ରୁ ମ୍ୟାଗାଜିନ୍ ପାଇଁ ଲେଖା ଦରକାର ନୋଟିସ୍‌ଟି ପଢିଲା ପରେ ମନ ଆଉ କେଉଁ କାମରେ ଲାଗିଲାନି । ଘରକୁ ଫେରି ନିଜର ନିତ୍ୟକର୍ମ ଶେଷ କଲି । ମା'ଙ୍କୁ କହିଲି "ମୋର ବହୁତ ପଢ଼ା ପଢ଼ି ଅଛି, ମୋତେ Disturb କରିବୁ ନାହିଁ । ମା' ମୋ କଥା ଶୁଣୁଥିଲେ କି ନାହିଁ ମୁଁ କହି ପାରିବି ନାହିଁ; କିନ୍ତୁ ମୋ ଗତିବିଧି ଲକ୍ଷ୍ୟ କରୁ-ଥିଲେ । ମୁଁ Study Room ରେ ପ୍ରବେଶ କଲି । ହଠାତ୍ ମା'ଙ୍କ କଣ୍ଠସ୍ୱର କାନରେ ବାଜିଲା । ସେ ବାପାଙ୍କୁ କହୁଥିଲେ :— "ଆଜି ବବ୍‌ଲୁର କ'ଣ ହୋଇଛି କେଜାଣି ? ମୁଁ ହରେ କ'ଣ ଗଣ୍ଡାଏ ଦେଇ ଉଠିପଡିଲା । କହୁଛି ମୋର ପଢ଼ା ପଢ଼ି ଅଛି । ମୋତେ ବିରକ୍ତ କରିବୁ ନାହିଁ" ।

ତା ପରେ ବାପାଙ୍କର ତାଚ୍ଛଲ୍ୟ ମିଶ୍ରିତ ସ୍ୱର:— " ପଢୁଆ ପିଲଟା ତ ? ପଢ଼ିବା ପାଇଁ ବସିଗଲା । ଦେଖିବ ଯା, ତୁମ ପୁଅ ଗୁଣମଣି ପଢାବହି ଭିତରେ **ଗପ ବହି ଧରି ବସି ଯାଇଥିବ** । ସେଟାକୁ ଯେତେ **କହିଲେ କ'ଣ** ହେବ । ହୁଁ———— । "

ଚମକି ପଡ଼ି ଛାତିରେ ମେଞ୍ଚାଏଁ ଛେପ ପକାଇଲି । ସତରେ ଏହି ଗଳ୍ପ ବହି ପଢ଼ିବା ଯୋଗୁଁ ବାପାଙ୍କଠାରୁ ମୁଁ କମ୍ ମାଡ ଗାଳି ଖାଇନି, କିନ୍ତୁ ଗପବହି ପଢ଼ିବା ଅଭ୍ୟାସଟା ମୁଁ ଆଦୌ ଛାଡ଼ି ପାରୁନି, କେଉଁଠାରୁ ଯଦି ଖଣ୍ଡେ ମିଳିଯାଏ ତାକୁ ନ ପଢ଼ିଲା ପର୍ଯ୍ୟନ୍ତ ମନରେ ଶାନ୍ତି ନ ଥାଏ । କିନ୍ତୁ ଏତେ ଗଳ୍ପ ବହି ପଢ଼ି ମଧ୍ୟ ମୁଁ କେବେ ଗଳ୍ପ ଲେଖି-ନାହିଁ । ଲେଖିବାକୁ ଚେଷ୍ଟା କରି ମଧ୍ୟ ପାରିନାହିଁ ।

ଯାହାବି ହେଉ ଆଜି ମୋତେ ଗଳ୍ପଟିଏ ଲେଖିବାକୁ ପଡ଼ିବ । ମନରେ ଗୋଟିଏ ଗଳ୍ପର କଳ୍ପନା କରି କାଗଜ କଲମ ଧରି ଲେଖି ବସିଲି ।

"ମଗଧ ଦେଶରେ ସୂର୍ଯ୍ୟ ପ୍ରତାପ ନାମରେ ଜଣେ ରାଜା ଥିଲେ । ତାଙ୍କର କନ୍ୟାର ନାମ ବିଜୟିନୀ, ସେ ଦେଖିବାକୁ ଅତ୍ୟନ୍ତ ସୁନ୍ଦର, ତାଙ୍କର ବିବାହ ନିମନ୍ତେ ରାଜା ସ୍ୱୟମ୍ବରର.............. ।

ନା—ଏ ଲେଖା ଚଳିବ ନାହିଁ । ଏହା ପରେ ଯାହା ବା କିଛି ମନକୁ ଆସିଲା ତାକୁ କେଉଁ ବହିରେ ନା କେଉଁ ବହିରେ ପଢିଥିବା ପରି ମନେ ହେଲା । କାହାର ଗଳ୍ପକୁ ଅନୁକରଣ କରି ଲେଖିବା ଉଚିତ ମନେ ହେଲାନି । ସେ କାଗଜ ଖଣ୍ଡିକ ଚିରି ପୁଣି ଲେଖିବାକୁ ଚେଷ୍ଟାକଲି ।

"ଆଟାଚି ଝଣ୍ଡିକ ଧରି ଷ୍ଟେସନ୍‌ରୁ ବାହରକୁ ବାହାରି ଆସିଲା ରଜେଶ । ଆଉ ରିକ୍‌ସା ଉଦ୍ଦେଶ୍ୟରେ ରିକ୍‌ସା ବାଲାକୁ ହାତରେ ଇଶାରା ଦେଇ ଡାକିଲା" ।

"ଆଉ ତୁ ତାକୁ ରିକ୍‌ସାରେ ବସାଇ ନେଇ ତା ଘରେ ପହଞ୍ଚାଇ ଦେଇ ଆସିଲୁ । ମଜୁରୀ ହିସାବରେ ସେ...........

ହଠାତ୍ ଏ ତାଚ୍ଛଲ୍ୟ ସ୍ୱର ଶୁଣି ମୁଁ ପଛକୁ ଫେରି ଚାହିଁଲି । ବିଜନ ମୁରୁକି ହସି ମୋହରି ଉଦ୍ଦେଶ୍ୟରେ କହୁଥିଲା । ମୁଁ କହିଲି ....."ବିଜନ ! ତୁ କେତେବେଳୁ ଆସିଲୁଣି ? "

ବିଜନ କହିଲା:— ମୁଁ ଏବେ ଆସିଲି । ତୋ ଗଳ୍ପଲେଖା ଦେଖି ପୂରଣ କରିବା ଉଦ୍ଦେଶ୍ୟରେ ମୁଁ ଏହା କହିଲି । ତୋର Essay ବହିଟା ଦେଲୁ ।



Digitized by PPRACHIN, SOA

ମୁଁ କହିଲି :— "ଦେଖ୍ ତୁ ଖାଲି ମଜା କରିବୁ । ମୋର ମ୍ୟାଗାଜିନ୍ ପାଇଁ ନିହାତି ଗୋଟେ ଲେଖା ଦରକାର । ତୁତ ଜାଣିଛୁ ପ୍ରତିବର୍ଷ ମୁଁ ଲେଖା ଦେବାକୁ ଗୃହୁଁଛି । କିନ୍ତୁ ମୋ' ପାରଙ୍ଗମ ପଣିଆ କେତେ ତାହା ବି ତୁ ଜାଣିଛୁ । ଆଛା କହିଲୁ:– କେଉଁ ବିଷୟରେ ଲେଖିଲେ ଭଲ ହେବ । "

"Love କାହାଣୀ ଉପରେ କିଛି ଗୋଟାଏ ଚିନ୍ତା କରି ଲେଖ୍ ଯା । କାରଣ ଆଜିକାଲି ସେହି କାହାଣୀ ଉପରେ ପିଲେ ବେଶୀ ଗୁରୁତ୍ୱ ଦେଉଛନ୍ତି, ତା ଛଡ଼ା କାହାଣୀର ବି Demand ରହିଛି । " ବିଜନ କହିଲା ।

ତା'ର କଥାର ଗୁରୁତ୍ୱ ଉପଲବ୍ଧି କରି ମୁଁ ଲେଖିଲି:– "ବାହାରେ ତୋଫା ଜହ୍ନ ପଡ଼ିଛି । ଖୋଲା ଝରକା ମଧ୍ୟ ଦେଇ ମୃଦୁ ମଳୟ ପ୍ରବେଶ କରିବା ଫଳରେ ଦେହରେ ଏକ ପ୍ରକାର ଶିହରଣ ସୃଷ୍ଟି ହେଉଛି । କକ୍ଷଟି ସମ୍ପୂର୍ଣ୍ଣ ଅନ୍ଧକାର । ସୁଇଚ୍ ଉପରେ ହାତ ରଖିବା ଦ୍ୱାରା କକ୍ଷଟି ଉଜ୍ଜଳ ଆଲୋକରେ ଭରିଗଲା, ତା ଆଖିରେ ଆଖିଏ ଲୁହ——— । "

"ତୁ ଶଳା ରୁମାଲ ନେଇ ତା ଆଖିରୁ ଲୁହ ପୋଛିଦେ——— । " ବିଜନ ଥଟ୍ଟା କରି କହିଲା——
"ହ୍ୟାପ୍——— ଗପ ଲେଖିବ । କାହା ଆଖିରୁ ଲୁହ ବୋହୁଥିଲାବେ----- । "

ବିଜନର କଥାଶୁଣି ମୋର ଅତ୍ୟନ୍ତ ରାଗ ଆସିଲା । ରାଗକୁ ଗୁପି ରଖି କହିଲି——— "ଦେଖ ବିଜନ ମୁଁ ଯାହା କିଛି ଲେଖୁଛି ତୁ ତାକୁ ଥଟ୍ଟା ପରିହାସରେ ଉଡାଇଲୁ । ତୁ Essay ବହି ନେଇ ଯା, ମୋତେ Disturb କରନା । "

ବିଜନ Essay ବହି ଧରି ଗ୍ଲଲିଗଲା ପରେ ସେ କାହାଣୀରୁ ମନ ଫେରଇଲି । କିଛି ସମୟ ଚିନ୍ତା କଲାପରେ ସବୁ ଗଳ୍ପର ମିଶ୍ରଣରୁ ଏକ କାହାଣୀର କଳ୍ପନା କରି ଲେଖିଲି :—

"ବାରଣ୍ଡାର ପାହାଚ ଉପରକୁ ନିଜର ଗୋଡ ଦୁଇଟାକୁ ଲମ୍ବାଇ ଦେଇ ଅତୀତର ସ୍ମୃତି ଭିତରେ ନିଜକୁ ହଜାଇ ଦେଇଥିଲା ରଜତ । ବିଗତ ଘଟଣାବଳୀ ଗୁଡ଼ିକ ବୁଢିଆଣୀ ସୁତା ସଦୃଶ ମନ ମଧ୍ୟରେ ଗୁଡେଇ ତୁଡେଇ ହୋଇ ତାକୁ ଘରି ବ୍ୟତିବ୍ୟସ୍ତ କରୁଥିଲେ । ଏଇଟା ତା ପାଇଁ କିଛି ନୂଆ ନୁହେଁ । ସବୁ ସମୟରେ ସୀମା କଥା ତାର ମନେ ପଡେ । ସେ ତା ପାଇଁ କ'ଣ ନ କରିଛି ; କିନ୍ତୁ ପାଇଛି କ'ଣ ! କିଛି ବି ନୁହେଁ ।

ସୀମାକୁ ସେ ନିଜର ଜୀବନଠୁଁ ବି ଅଧିକ ଭଲ ପାଇଥିଲା । ଦୁହେଁ ଦୁହିଁଙ୍କୁ ପ୍ରତିଦିନ କିଛି ସମୟ ପାଇଁ ନ ଦେଖିଲେ ପାଗଳ ପ୍ରାୟ ହେଉଥିଲେ । ଶେଷରେ ଦୁହେଁ ଦୁହିଁକୁ ପାଇବାକୁ ସଙ୍କଳ୍ପବଦ୍ଧ ହେଲେ । କିନ୍ତୁ ସୀମାର ପିତା ଯେଉଁଦିନ ଏ ବିଷୟ ଜାଣିଲେ ସେ ସୀମାକୁ ବହୁତ ଭର୍ତ୍ସନା କଲେ । ତାଙ୍କୁ କଡ଼ା ନଜର ବନ୍ଦୀରେ ରଖିଲେ । ଆଉ ରଜତର ପିତାଙ୍କୁ ମଧ୍ୟ ଏ ବିଷୟରେ ଜଣାଇ ଦେଲେ, ସେଦିନ ଘରକୁ ଫେରି ବାରଣ୍ଡାରେ ପାଦ ଦେଉ ଦେଉ ରଜତ ବାପାଙ୍କ କଟୁକ୍ତି ଶୁଣି ପାରିଲା, ତା ବାପା କହୁଥିଲେ............

"ଗଜ ମୂର୍ଖ ! ପରୀକ୍ଷାରେ ତିନି ତିନି ଥର ଫେଲ୍ ହେଲଣି, କ'ଣ ଟିକେ ମୁଣ୍ଡରେ ପଶୁଛି । ସକାଳ ୯ଟା ହେଲଣି, ତଥାପି ଶେଯରେ ଶୋଇରହି ଗୁଣମଣି କୁମ୍ଭକର୍ଣ୍ଣ ପରି ଘୁଙ୍ଗୁଡ଼ି ମାରୁଛି । ଅକାଳ କୁଷ୍ମାଣ୍ଡ...... କେଉଁ କାମକୁ ହେଲ ନାହିଁ । ତା'ର ସହପାଠୀମାନେ



Digitized by PPRACHIN, SOA

ଆ ପାଖୁ ମଝି କ୍ଲାସ୍‌ରେ ପଢ଼ିଲେଣି, ତାଙ୍କୁ ଲଜ୍ଜା ଅଛି ନା ସରମ ଅଛି ।”

ବାପାଙ୍କ ତାତ୍ପର୍ଯ୍ୟପୂର୍ଣ୍ଣ ମନ୍ତବ୍ୟ ଶୁଣି ମୋ ନିଦ୍ରା ହଠାତ୍ ଭାଙ୍ଗିଗଲା । ମୁଁ ହଠାତ୍ ଉଠିପଡ଼ି ହସିବି କି କାନ୍ଦିବି କିଛି ସ୍ଥିର କରିପାରୁନଥିଲି । ଯେଉଁ ସୁଖ ସ୍ୱପ୍ନଟି ଦେଖୁଥିଲି ତାହା କେଉଁ ଆଡେ ଲୀନ ହୋଇ ଯାଇଥିଲା । ବାସ୍ତବ ଜୀବନରେ ତ କେବେ ଗଳ୍ପ ରଚନା କରି ପାରିବିନି । ସ୍ୱପ୍ନ ଦେଖିଲା ପରେ ଯାହାବି ଟିକେ ଆତ୍ମ ସନ୍ତୋଷ ଜାଗ୍ରତ ହୋଇଥିଲା, ବାପାଙ୍କର କଟୁକ୍ତି ଓ ରକ୍ତାର୍ଯ୍ୟିତ ନେତ୍ରକୁ ଦେଖିଲା ପରେ ମୋର ଅବସ୍ଥା ଯାହା ହୋଇଥିବ ଆପଣମାନେ ଅନୁମାନ କରି ପାରୁଥିବେ ।

ସତରେ......ମୋ ପରିସ୍ଥିତିରେ ଯଦି ଆପଣ-ମାନେ ଥାଆନ୍ତେ ତା ହେଲେ କ’ଣ କରିଥାନ୍ତେ, ଟିକେ କୁହନ୍ତୁନା———???



## ରକ୍ତଦାନ ସଂପର୍କରେ କେତେକ ଜ୍ଞାତବ୍ୟ ବିଷୟ

୧। ୧୭ ଠାରୁ ୫୫ ବର୍ଷ ବୟସ ଓ ୪୫ କି: ଗ୍ରା: ଓଜନ ଥିବା ଯେ କୌଣସି ପୁରୁଷ ବା ମହିଳା ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ରକ୍ତଦାନ କରିପାରିବେ ।

୨। ଡ଼ାକ୍ତରୀ ପରୀକ୍ଷାରେ ଉପଯୁକ୍ତ ବିବେଚିତ ହେଉଥିବା ବ୍ୟକ୍ତିଙ୍କଠାରୁ କେବଳ ରକ୍ତ ଦାନ ଗ୍ରହଣ କରଯାଏ ।

୩। ଜଣେ ସ୍ୱାସ୍ଥ୍ୟବାନ୍ ପୁରୁଷ ପ୍ରତି ୩ ମାସରେ ଥରେ ଓ ସ୍ୱାସ୍ଥ୍ୟବତୀ ମହିଳା ପ୍ରତି ୬ ମାସରେ ଥରେ ଲେଖାଏଁ ରକ୍ତଦାନ କରିପାରିବେ ।

୪। ଏଥି ସକାଶେ କୌଣସି ବିଶେଷ ଧରଣର ଖାଦ୍ୟ କିମ୍ବା ଦୀର୍ଘଦିନ ବିଶ୍ରାମର ମୋଟେ ଆବଶ୍ୟକତା ନାହିଁ ।

୫। ଏହା ମୋଟେ ଯନ୍ତ୍ରଣାଦାୟକ ନୁହେଁ କିମ୍ବା ଏହା ଦୁର୍ବଳ କରଏ ନାହିଁ ।

ଅନୁରୋଧ— ହୃଦୟବାନ ହୁଅନ୍ତୁ—ରକ୍ତଦାନ କରନ୍ତୁ ।



Digitized by PPRACHIN, SOA

# ପ୍ର ତୀ କ୍ଷା

ଅରୂପ ପାଲ
+୨, ୨ୟ ବର୍ଷ ବିଜ୍ଞାନ

ସଂଧ୍ୟା ପାଖେଇ ଆସିଲା । ରାସ୍ତା କଡର ବତୀଖୁଣ୍ଟ ସବୁ ଆଲୋକିତ ହେଲେ । ପାନ୍‌ପୋଷ ପରି ଛୋଟିଆ ସ୍ଥାନଟିର ରାସ୍ତାମାନେ ସାଧାରଣତଃ ଆଲୋକିତ ହୁଅନ୍ତି ନାହିଁ । କୁନି କୁନି ପିଲାସବୁ କଲୋନୀ ପଡ଼ିଆ ( ଯେଉଁଠି ସେମାନେ ସାଧାରଣତଃ ବୋହୁ-ଚୋରୀ ହିଁ ଖେଳିଥାନ୍ତି ) ରୁ ଅପସରି ଗଲେ । ଶୀତ ରାତିରୁ ନିଜକୁ ରକ୍ଷା କରବା ପାଇଁ ଗଛତଳେ ବସିଥିବା ଭୀକାରିଟି ନିଆଁ ଜାଳିଲା ଓ ଅପେକ୍ଷା କଲା । ବାରଘଣ୍ଟା ପରର ଦିନଟିକୁ ! ପାନ ଦୋକାନ ଗୁଡ଼ିକରେ ପେଟ୍ରୋମାକସ, ହୋଟେଲ୍ ( ଯେଉଁଠି ସାଧାରଣତଃ ଚା'ହିଁ ସତେଜ୍ ବିକ୍ରୀହୁଏ ) ରେ ବଲ୍‌ବଟି ଜଳିଲା । ଏତେସବୁ ଜଳି ଗଲା ପରେ ବି ସନ୍ଧ୍ୟା ଆସିଲା । ସନ୍ଧ୍ୟା ପରେ ରାତି ବି ।

ପାନପୋଷ ଛୋଟ ଷ୍ଟେସନଟିଏ । ଏଠି ପ୍ରାୟ କେହି ଓହ୍ଲାନ୍ତିନି । ତଥାପି ଦେଖୁଥିଲି ଲୋକଟିକୁ । ସେ ବୋଧେ ଅପେକ୍ଷା କରିଛି କାହାକୁ । କିନ୍ତୁ କାହାକୁ ବା ଅପେକ୍ଷା କରିଥିବ ! ହୁଏତ ପୁଅକୁ । ହୁଏତ ଶାଶୁଘରୁ ଫେରନ୍ତା ଝିଅକୁ । ହୁଏତ ଝିଅ ଘରକୁ ଯାଇଥିବା ସ୍ତ୍ରୀକୁ । ହୁଏ ତ' ବନ୍ଧୁକୁ । କିମ୍ବା ହୁଏତ କେହିଜଣେ ଅଚିହ୍ନା ଭଦ୍ରବ୍ୟକ୍ତିକୁ । ମୁଁ ଚାହୁଁ ନଥିଲି ଲୋକଟି ବିଷୟରେ ଭବିବାକୁ । କିନ୍ତୁ ଆଜିକାଲି ଅନ୍ୟମାନଙ୍କୁ ଦେଖି ସେମାନଙ୍କ ବିଷୟରେ ଭବି ଦୟା କରିବା ଛଡା ଆଉ କ'ଣ ବା କରଯାଇପାରେ !!!

ଲୋକଟ ବିଡ଼ି ଜଳାଇଲା । ଦିଆସିଲିର ଆଲୋକରେ ତା'ର ଦାଢି ଭିତରେ ଲୁଚି ରହିଥିବା ମୁହଁଟି ଥପ୍‌କରି ଥରେ ଜଳିଉଠି ଲିଭିଗଲା । ସେ' ବୋଧେ ମତେ ଦେଖୁଥିଲା । କେମିତି କଣେଇ କଣେଇ ଦେଖୁ-ଥିଲା । ଆହା ! ବିଚରା ଲୋକଟି କି କଷ୍ଟ ପାଉଛି । ଏ' ଶୀତରାତିରେ ବିଡ଼ି ଜଳାଇ ଲୋକଟି ଯାହାପାଇଁ ଅନେଇ ବସିଛି ସେ' ଲୋକଟି କି ନିଷ୍ଠୁର ସତେ । ଅନ୍ୟକୁ ଏତେଟା ଭଲପାଉଥିବା ଭଳି ଲୋକ ଏବେ ବି; ଦୁନିଆରେ ଅଛନ୍ତି !!! ଲୋକଟି ପ୍ରତି ମୋ ମନ ତରଳି ଗଲା । କି କଷ୍ଟରେ ବସିଛି ଲୋକଟା । କାଠକୁଡ଼ି ସାଠକୁଡ଼ି ହୋଇ ବସିଛି ଭଙ୍ଗା ସିମେଣ୍ଟ ଚେୟାର୍‌ଟିର କଣରେ । ଏକ ଲୟରେ ଚାହିଁଛି ଜହ୍ନ ଆଲୋକରେ ଚିକ୍‌ଚିକ୍ ଦିଶୁଥିବା ରେଳଧାରଣାକୁ । ମଝିରେ ମଝିରେ ମତେ ବି' ଚାହୁଁଛି ।

ଆଖପାଖରେ କେହି କୁଆଡେ ନାହାନ୍ତି । ଭୟଙ୍କର ଏଇ ନୀରବତା । ମୁଁ କୌତୁହଳରେ ଅପେକ୍ଷା କରିଛି ସେଇ ଭଦ୍ରବ୍ୟକ୍ତି ( ମହିଳା ବି' ହୋଇ ଥାଇପାରନ୍ତି । ) କୁ ଦେଖିବାକୁ ଯାହାକୁ ଏଇ ଲୋକଟି ହନ୍ତସନ୍ତ ହୋଇ ଅପେକ୍ଷା କରିଛି ।

Digitized by PPRACHIN, SOA

ଗତି ବଢ଼ି ଚାଲିଛି । ଗୋଟିଏ ପରେ ଗୋଟିଏ ଟ୍ରେନ୍ ଚାଲିଯାଉଛନ୍ତି । କେହି ଅଟକୁଛି ତ କେହି ଆମ ଉଭୟଙ୍କର ଦୟନୀୟତାକୁ ଭ୍ରୂକ୍ଷେପ ନକରି ଆଗେଇ ଯାଉଛି ଅଫିସ୍‌କୁ ଡେରିରେ ବାହାରିଥିବା ଅଫିସର୍ ପରି । ଶେଷ ଟ୍ରେନ୍‌ଟି ବି ଚାଲିଗଲା । ମୁଁ ଅତିଷ୍ଠ ହୋଇ ଉଠୁଥିଲି । ଶୀତରେ ମୋର ସର୍ବାଙ୍ଗ ଥରି ଉଠୁଥିଲା । କି ଆଶ୍ଚର୍ଯ୍ୟ ଏ' ଲୋକଟା !!

ହଠାତ୍ ଉଠିଲା ସେ ଲୋକଟି । ମୁଁ ଡରିଗଲି । ଆତ୍ମହତ୍ୟା କରିବାକୁ ଯାଇନି ତ, !!! ଝଡ଼ପରି ଲୋକଟି ମୋ' ଆଡକୁ ଆସିଲା । ମୋ ମୁହଁକୁ କିଛି ସମୟ ଚାହିଁଲା ଲୋକଟି । ଅତ୍ୟନ୍ତ ଦରଦଭରା ସେ' ଚାହାଣୀ । ଭଙ୍ଗା ସ୍ୱରରେ ସେ ଲୋକଟି ମତେ ପଚାରିଲା ।

"କାହାକୁ ଅପେକ୍ଷା କରିଛ ? ଯଦି କାହାକୁ ଅପେକ୍ଷା କରିନ ତ । ଘରକୁ କାହିଁକି ଯାଉନ । ତମକୁ ଦେଖି ଦେଖି ମୋ' ମୁଣ୍ଡ ବିନ୍ଧିବା ଆରମ୍ଭ କଲାଣି । ତଥାପି ଯାଉନ କାହିଁକି !! ଅଯଥା ତୁମ ବିଷୟରେ ଭାବି ଭାବି ମୁଁ ବି ଘରକୁ ଯାଇପାରୁନି ।

ମୁଁ ହସିଲି, ଅତ୍ୟନ୍ତ ବିକଳ ଭାବରେ ।

# ରକ୍ତଦାନ ସଂପର୍କରେ

ରକ୍ତ ଦାନ ସମ୍ପର୍କରେ କେତେକଙ୍କ ଭୁଲ ଧାରଣା ରହିଛି ଯେ ରକ୍ତଦାନ କଲେ ଶରୀର କ୍ଷୀଣ ହୋଇ ରୋଗଗ୍ରସ୍ତ ହୋଇଯାଏ । କିନ୍ତୁ ଡାକ୍ତରୀ ବିଜ୍ଞାନ କହେ ଯେ ଏହା ମୋଟେ କ୍ଷତିକାରକ ନୁହେଁ । ତା'ର କାରଣ ହେଲା ଦେହରେ ମୋଟ ୫ ଲିଟର ରକ୍ତ ଥାଏ ଏବଂ ସେଥିରୁ ମାତ୍ର କୋଡ଼ିଏ ଭାଗରୁ ଭାଗେ ଅର୍ଥାତ ୨୫୦ ଏମ ଏଲ ରକ୍ତ ନିଆଯାଇ ଥାଏ । ଏହି ସ୍ୱଳ୍ପ ପରିମାଣ ରକ୍ତ ପୁଣି ୨୪ ଘଣ୍ଟା ମଧ୍ୟରେ ଦେହରେ ଭରଣା ହୋଇଥାଏ । ପ୍ରତ୍ୟେକେ ଜାଣନ୍ତି ଗୋଟିଏ ମାନବ ଜୀବନକୁ ବଞ୍ଚାଇବାରେ ରକ୍ତର ଆବଶ୍ୟକତା ଓ ମୂଲ୍ୟ କେତେ ବେଶି । ଯେହେତୁ ଆଜିଯାଏଁ କୃତ୍ରିମ ରକ୍ତ ରୋଗୀର ବ୍ୟବହାର ପାଇଁ ପ୍ରସ୍ତୁତ ହୋଇ ନାହିଁ, କିମ୍ବା ପ୍ରାଣୀ ଜଗତର ଅନ୍ୟ କୌଣସି ରକ୍ତ ମଧ୍ୟ ମାନବ ଜୀବନକୁ ବଞ୍ଚାଇ ପାରିବ ନାହିଁ । ଏହି ମୂଲ୍ୟବାନ ମାନବ ଜୀବନକୁ ମାନବ ରକ୍ତ କେବଳ ବଞ୍ଚାଇ ପାରେ ।



Digitized by PPRACHIN, SOA

(ଶିଶୁ ଗଳ୍ପ)

# ଭୁଲର ପ୍ରାୟଶ୍ଚିତ

ଅରୁଣ କୁମାର ସାହୁ
+୨ ବିଜ୍ଞାନ ୨ୟ ବର୍ଷ

ବଲାଙ୍ଗିର ଜିଲ୍ଲାର ନିକଟବର୍ତ୍ତୀ କଂସଡୋଲ ଗ୍ରାମରେ ଦୁଇଜଣ ଯୁବକ ନିଜ ନିଜର ପରିବାର ସହିତ ରହୁଥିଲେ । ଗୋଟିକର ନାମ ନରିସିଂହ; ଅନ୍ୟଟିର ନାମ ହରି ପ୍ରଧାନ । ନରିସିଂହର ଘରେ ସବୁବେଳେ ସ୍ୱାମୀ ସ୍ତ୍ରୀ ଭିତରେ ଝଗଡା ହେଉଥାଏ । କିନ୍ତୁ ହରି ପ୍ରଧାନ ତାର ପରିବାର ସହିତ ହସଖୁସିରେ ତା'ର ସମୟ ଅତିବାହିତ କରୁଥାଏ । ନରସିଂହ ହରି ପ୍ରଧାନର ହସଖୁସି ଦେଖି କ୍ରୋଧିତ ହେଉଥିଲା । ସେ କ୍ରୋଧ ବଶତଃ ହୋଇ ହରିପ୍ରଧାନର ବଗିଚ୍ଚରେ ହୋଇଥିବା ମାଖନକୁ ତୋଳି ନେବାପାଇଁ ଯୋଜନା ଆରମ୍ଭ କଲା । ସେହି ଗ୍ରାମରେ ଗାଁ ଲୋକମାନେ ମିଶି "ରାମ ରାବଣ ଯୁଦ୍ଧ" ନାଟକ କରୁଥିଲେ । ସେହି ନାଟକ ଯିବାପାଇଁ ହରିପ୍ରଧାନ ତା'ର ପରିବାର ସହିତ ବାହାରିଲା । ନରିସିଂହ ସୁବିଧା ପାଇ ରାତିରେ ତା'ର ବଗିଚ୍ଚର ସମସ୍ତ ମାଖନ ତୋଳି ସେ ଅନ୍ୟ-ଗ୍ରାମକୁ ଯାଇଁ ବଡ ପରିବା ବ୍ୟବସାୟୀ ପାଖରେ ବିକ୍ରି କରିଦେଲା । ସକାଳେ ରବିବାର ହାଟକୁ ମାଖନ ତୋଳି ବିକ୍ରିକରି ନେବା ପାଇଁ ଭାବିଲା । ଯେତେ-ବେଳେ ସେ ବଗିଚ୍ଚକୁ ଯାଇ ତାର ମାଖନ ନ ଥିବାର ଦେଖି ଅତ୍ୟନ୍ତ କ୍ରୋଧିତ ହେଲା ଓ ପାଟିକରି ଗାଳି-ଦେବା ଆରମ୍ଭ କଲା । ସେ ଯୋର୍‌ରେ ପାଟିକରି କହିଲା "ଶଳା ଯିଏ ଇ ମାଖନ କେ ତୁଲିଛେ ତାକୁ ମୁଇଁ ଭଲକରି ଦେଖି ନେବି । ସେ ତ ଯେତେଲେଇକରି ହେଲେ ହ'ଟ୍‌କେ ବିକ୍‌ବାର ଲାଗି ନେବା ତାକୁ ମୁଇଁ ଛାଡ଼େନାଇ ! ଶଳା ଯେତେଲେଇକରି ହେଲେ ଧରା ପଡ଼ବା । ତାକେ ମୁଇଁ ଘୁରୁଲପରେ ଭଲ୍‌କରି ମଜାଟେ ଚଖାମି । ଏହିପରି ଗାଳି କରିବାର ଶୁଣି ତାର ସ୍ତ୍ରୀ ତାର ସ୍ୱାମିଙ୍କ ନିକଟକୁ ଧାଇଁ ଆସିଲା ଓ ପଚାରି ସମସ୍ତ ବିଷୟ ଜାଣି ସେ ମଧ୍ୟ କ୍ରୋଧିତ ହେଲା । ସେ ମଧ୍ୟ ରାଗିଯାଇ କହିଲା । ହଇରେ ରଇଖିଆ ଗାତଶୁଆ ତୋର ବଂଶ ବୁଡ଼ିଯିବ । ତୁଇ ଆମର ମାଖନ ନେଇକରି କେତେଦିନ ଖାଇବୁରେ । ଭଗବାନ ନେଇନ କାଁଏ । ସେ ଭଲକରି ତାର ମାୟା ଦେଖାବ । ନ, ଆମେ ଦୁହେଁ ମାଇଝି ପୁରୁଷ ଯଦି ଧର୍ମେ ଥିମୁଁ ତାହେଲା ଆମକୁ ଭଗବାନ ଦୁଃଖେ ସୁଖେ ଆମର ସମୟଟାକେ କଟେଇଦେବା ।

କିଛିଦିନ ପରେ ସେ ଧାନଚାଷ କରିବା ପାଇଁ ବିଚାର କଲା । ସେ ସମୟ ଦେଖି ତାର ଜମିରେ ଚାଷ କରିବାକୁ ଲାଗିଲା । ତାର ସ୍ତ୍ରୀ ଓ ନିଜର ଅମୂଲ୍ୟ ପରିଶ୍ରମର ଫଳ ତାକୁ ମିଳିଲା । ଜମିରେ ବଡ଼ ବଡ଼ ଧାନଗଛ ହେଲା । ଧାନଗଛ ଗୁଡ଼ିକ ପବନରେ ସାଁ ସାଁ ଶବ୍ଦ କରୁଥାଏ । ନରିସିଂହ ପୁଣି ହରିପ୍ରଧାନ କ୍ଷେତରେ ଧାନଗଛ ଦେଖି ସେ କ୍ରୋଧିତ ହେଲା ଓ ଦିନେ

Digitized by PPRACHIN, SOA

ଘଡିରେ ଲୁଚି ଲୁଚି ଯାଇ ସବୁଧାନ କାଟି ନେଇଗଲା । ତାର ପରଦିନ ଯେତେବେଳେ ହରିପ୍ରଧାନ ଓ ତାର ସ୍ତ୍ରୀ କ୍ଷେତ ନିକଟକୁ ଗଲେ ସେତେବେଳେ ସେମାନେ କ୍ଷେତର ଅବସ୍ଥା ଦେଖି କାନ୍ଦିବାକୁ ଲାଗିଲେ; ଏହି ସମୟରେ ତା'ର ସ୍ତ୍ରୀ ପାଟିକରି କହିଲା " ହେ ଭଗବାନ୍ ! ଆମେ କାହାରି କାଁ କ୍ଷତି କରିଥିଲୁ ଯେ ସେ ଆମର ଇ ଅବସ୍ଥା କଲା । ଆଘ ତ ମାଖନ କାଟିକରି ନେଇଗଲା ତା ପରେ ଆମର ଧାନଗଛ ବି କାଟିକରି ନେଇଗଲା, ଭଗବାନ୍ ତୁମେ ହେଲେ କହ କାଣା ଆମର ଭୁଲ ହେ; ଆମେ ଆର ଜନ୍ମେ କାଁ ପାପ୍ କରିଥିଲୁ ଯେ ଆମକୁ ତୁଇ ଇ ଜନ୍ମେ ସେ ପାପର ଫଲ ଦେଉଛୁ । ଏହାପରେ ତା'ର ସ୍ୱାମୀ ତାକୁ ବୁଝାଇ କହିଲା, ନେଇ କାନ୍ଦରେ ମୋର ଘନି ତୁଇ ନେଇ କାନ୍ଦବା ଗଲ ଘରକେ ଯିମା, ଭଗବାନ ଆମକୁ ସୁଖେ ଦୁଃଖେ ଚଳେଇ ଥକାବାନ୍ !

କିଛିଦିନ ସେମାନେ କଷ୍ଟେ ମଷ୍ଟେ ଚଳିଗଲେ । ଦିନେ ନରିସିଂହ ତା'ର ସାତ ବର୍ଷର ପୁଅକୁ ଧରି ପାଖରେ ଥିବା ନାଳକୁ ଗାଧୋଇବା ପାଇଁ ଯାଇଥିଲା । ବର୍ଷା ଫଳରେ ସେ ସମୟରେ ନାଳଟିର ସ୍ରୋତ ଖୁବ୍ ଜୋରଥିଲା । ତା'ର ପୁଅ ଗାଧୋଇବା ସମୟରେ ସେ ବେଶି ପାଣି ଭିତରକୁ ପଳାଇଗଲା । ନଦୀର ସ୍ରୋତ ବଳରେ ସେ ସେହି ସ୍ରୋତରେ ଭାସିଯିବା ସମୟରେ ନରିସିଂହ ଦେଖି ପକାଇ ପାଟି କରିବାକୁ ଲାଗିଲା ଓ କହିଲା ରେ କିଏ ଅଛରେ ମୋର ଛୁଆ ପାନ୍ଥି ଭସି ଯାଉଛେ ତାକେ ବଚରେ ହେ ଭଗବାନ ଇଟା କାଣା ହେ ! ପାଟିଶୁଣି ହରିପ୍ରଧାନ ସେଠାକୁ ଧାଇଁଆସି ତା'ର ପୁଅକୁ ପାଣିରୁ ଉଦ୍ଧାର କରି ତାକୁ ନୂଆ ଜୀବନ ଦେଲା । ନରିସିଂହ ହରିପ୍ରଧାନ ଆଗରେ ସବୁକଥା କହି ତା'ର ଭୁଲ ସ୍ୱୀକାର କଲା । ସେ ଯୋର୍‌ରେ ପାଟିକରି କହିବାକୁ ଲାଗିଲା ଓ କହିଲା ହଇବୋ ତୁଇ ମୋତେ ଯାହା ଶାସ୍ତି ଦେବୁ ଦେ ; ତୁଇ ଯାହା କହିବୁ ମୁଇଁ କରମି । ଏହାଶୁଣି ହରି-ପ୍ରଧାନ କହିଲା "ଦେଖରେ ଭାଏ ଭଗବାନ ଆମକୁ ଜନମ ଦେଇଛନ୍ ଭଲକାମ କର୍‌ବାର୍ ଲାଗି । ତୁଇ ଦିନେ ମର୍‌ବୁ ମୁଇ ଦିନେ ମର୍‌ମି । ଯଦି ଆମେ ଭଲ କାମ କରି କରି ମରମା ତାହେଲେ ଆମକୁ ସମସ୍ତେ ମନେ ରଖବେ । ଆଉ ଭଗବାନ ବି ଖୁସି ହେବେ । ଆଉ ଇଟା ତ ମୋର କର୍ତ୍ତବ୍ୟଥିଲା । ଜଣେ ବୁଡ଼ି-ଯାଉଥିବା ଆଉ ମୁଇଁ ଦେଖୁଥିମି କାଁ । ଗଲା ଯାହା-ହେଲା ହେଇଗଲା । ସେ କଥା ଗୁଡାକେ ଭୁଲିଯା, ଆଜିଠୁ ତୁଇ ମୋର ଭାଏ ହୋଉ । ଗଲ ଯିମା, ତାପରେ ଦୁଇଜଣ ସାଙ୍ଗହୋଇ ନିଜ ନିଜ ଘରକୁ ଗଲେ ।





Digitized by PPRACHIN, SOA

# ପ୍ରତିଦାନର ପ୍ରତିଫଳ

ରୀନା ବଡଶୋଇ
+୩ୟ କଳାଛାତ୍ରୀ

କି ନିଷ୍ଠୁର ଏ ଦୁନିଆଁ ! ଦୁନିଆଁ ସହିତ ତାଳ-ଦେଇ ଗତି କରୁଛନ୍ତି ଆଜିର ଯୁବ ସମାଜ, ଯୌତୁକ ରୂପକ ନିଆଁରେ "ଜାଳିପୋଡ଼ି ଦେଉଛନ୍ତି" ଏ ଦୁନିଆଁଟିକୁ । ଯୌତୁକ ଆଗରେ ତୁଚ୍ଛ ହୋଇଛି ଆଜିର ସ୍ନେହ ମମତା । ଆଜିର ଯୁବ ସମାଜ ଯୌତୁକ ଆଗରେ ନିଜର ନିଜସ୍ୱ ହରାଇ ବସୁଛନ୍ତି । କି ବିଚିତ୍ର ଏ ଦୁନିଆଁ ! ତେଣୁ ଆଜିର ଆଧୁନିକ ଯୁଗରେ ବାହା-ଘରଟିକୁ ଏକ କଣ୍ଢେଇ ବାହାଘର ବୋଲି କହିଲେ କିଛି ଅତ୍ୟୁକ୍ତି ହେବନି ଏବଂ ହାତ ଗଣ୍ଡାଳୀକୁ Hand Shake କହିଲେ କିଛି କ୍ଷତି ହେବନି, କ'ଣ ମୂଲ୍ୟ ଅଛି ସେ ବାହାଘରରେ ; ଏକ ନିଶ୍ୱାସରେ ଏସବୁ କଥା କହି କହି ଆଗେଇ ଚାଲିଛି ଲିସା ସାଙ୍ଗ ଅଳକା-ସହିତ ।

ହଠାତ୍ Car ର Horn ଶୁଣି ଫେରି ଚାହିଁଲା ଲିସା, ଦେଖିଲା ବିକାଶ ଗାଡ଼ିଧରି Bank ଆଗରେ ଛିଡା ହୋଇଛନ୍ତି । ଲିସାର ମନେ ପଡ଼ିଗଲା ଆଜି ତାର ଦରମା ନେବାର ଶେଷ ତାରିଖ, ଜଣକ ପରେ ଜଣେ ସମସ୍ତ ଅଧ୍ୟାପକ ଅଧ୍ୟାପକାମାନେ ଦରମା ନେଇ ସାରିଲେଣି, ବାକି ଅଛି କେବଳ ଲିସା ।

ବିକାଶ କହି--କ'ଣ ସବୁ ଗପରେ ମଜି ଯାଇଛ ! ଶୀଘ୍ର ଆସ, ତେଣେ ଯେ Party attend କରିବାରି ଅଛି । ଲିସା ଶୀଘ୍ର ଦରମା ଉଠାଇ ଅଳକାକୁ ବିଦାୟ ଦେଇ Car ରେ ବସିଲା, ଲିସା ଆଜି ବେଶ ଖୁସି ଜଣା ପଡୁଛି । ବିକାଶର ଗାଡ଼ି ଚଳାଇବାର ବେଗ ଯେତିକି ମନ୍ଥର ହେଉଥାଏ ଲିସାର ଭାବନାର ସୂଅ ସେତିକି କ୍ଷିପ୍ର ବେଗରେ ଗତି କରୁଥାଏ । ଅତୀତର ସମସ୍ତ ଘଟଣା ତା ଆଖିଆଗରେ ନାଚି ଉଠୁଥାଏ, କି ଉଦାର ଏ ବିକାଶ । ଆଜି ପର୍ଯ୍ୟନ୍ତ ତା' ଦରମାର ଗୋଟେ ପଇସା ଉପରେ ମଧ୍ୟ ସେ ଅଧିକାର ସାବ୍ୟସ୍ତ କରି ନାହାନ୍ତି, କି ପ୍ରତିରୋଧ କରି ନାହାନ୍ତି--ଆଜି ତା'ର ଦରମା ନେବାର ଶେଷ ପାଳି, ତାର ପ୍ରାଣାଧିକ ଝିଅ ଜୁନା ଜଣେ ଡାକ୍ତର ହୋଇ ପାରିଛି । ସତରେ ସେ ତା'ର କର୍ତ୍ତବ୍ୟରେ ଅବହେଳା କରିନି, ବାପାଙ୍କର ଅନ୍ତିମ ଇଚ୍ଛାକୁ ସେ ପୂରଣ କରି ପାରିଛି, ଅବଶ୍ୟ ଏଥିରେ ବିକାଶର ଦାନ ଅତୁଳନୀୟ । ସତରେ କି ଶୁଭ ବେଳାରେ ବିକାଶ ସହିତ ତାର ଦେଖା ହୋଇଥିଲା । ପୁଣି ସେ ଫେରିଗଲା ସେହି ଶୁଭ ବେଳାର କେତୋଟି ସ୍ମୃତି ଭିତରକୁ ।

M Sc. ପରେ Interview ର Call ପାଇ ଖୁସି ହୋଇଥିଲା ଲିସା ଏବଂ ଅତି ଆନନ୍ଦରେ ତାର ବୋଉକୁ କହିଥିଲା । "ବୋଉ ଜାଣିଛୁ ଆଜି-ଗୋଟେ Lecturer Post ପାଇଁ Interview ର Call ଆସିଛି, ମୁଁ ଯିବି" ?

ଚମକି ପଡ଼ିଥିଲେ ବୋଉ ତାର ଏବଂ କହିଥିଲେ କ'ଣ କହିଲୁ ତୁ ଚାକିରୀ କରିବୁ ! ଦାସ ବଂଶର ମର୍ଯ୍ୟାଦାକୁ ପଦାରେ ପକାଇବୁ !! ଘରୁ ତୁ ଗୋଡ କାଢିବୁ ଚାକିରୀ କରିବା ପାଇଁ । ଲିସା କିନ୍ତୁ ସେଦିନ ତା ବୋଉକୁ ବୁଝାଇଥିଲା ଦେଖ ବୋଉ ପାଠ

Digitized by PPRACHIN, SOA

ପଢାଇଲୁ କଣ ଏଇଥିପାଇଁ ! ଭେକ ଶୋଷରେ ମାରିବା ପାଇଁ !!

ଡିଗ୍ରୀ Certificate ଗୁଡା କ'ଣ ଘରେ ରଖି ପୂଜା କରିବି ? ପୁଅ ଜନ୍ମ କଲୁ, ପାଠ ପଢାଇ ମଣିଷ କଲୁ । କିନ୍ତୁ ଫଳ କ'ଣ ହେଲା, ପୁଅ ତ ତୋର ଯୌତୁକ ଆଗରେ ନିଜକୁ ବିକ୍ରି କରି ଦେଇଛି' ମାଆ, ଭାଇ, ଭଉଣୀ ସମସ୍ତେ ତା'ର ପର ହୋଇଗଲେ । ସେଥିରେ ଦାସ ବଂଶର ମର୍ଯ୍ୟାଦା ଗଲାନି ମୁଁ ଚାକିରୀ କଲେ ଚାଲିଯିବ ! ମୁଁ ନିଶ୍ଚୟ ଚାକିରୀ କରିବି ଅନ୍ତତଃ ବୁନାକୁ ମଣିଷ କରିବାକୁ ଏତିକି କହି ଲିସା ଚାଲିଯାଇଥିଲା ଚାକିରୀ ଅନ୍ୱେଷଣରେ, ଦାସ ବଂଶର ଝିଅ ଚାକିରୀ କରିବାରେ ଲିସା ହିଁ ଥିଲା ପ୍ରଥମ ।

ଏକ ନିରବ ନିଷ୍ପଳ କାଠ ପିତୁଳା ପରି ଲିସାର ବୋଉ ତା ଯିବା ବାଟକୁ ଅନାଇ ରହିଥିଲେ ।

ଆଚ୍ଛା, ଆପଣ ଚାକିରୀ କରିବେ ? ଚମକି-ପଡ଼ିଥିଲା ଲିସା ? ଦେଖିଲା ଅନ୍ୟ ଜଣେ ଯୁବକମଧ୍ୟ ସେହି Post ପାଇଁ ଅପେକ୍ଷା କରିଛନ୍ତି ? ଲିସା ଅତି ନମ୍ର ଗଳାରେ ଉତ୍ତର ଦେଲା "ହଁ ମୁଁ ଚାକିରୀ କରିବି ?

ଲିସା ଯୁବକଟିର Certificate ଦେଖି ଜାଣି ପାରିଥିଲା ଯେ ତାର ନାଁ ବିକାଶ ବୋଲି, ସେ ଭାବିଥିଲା ବିକାଶ ନିଶ୍ଚୟ ସେହି Post ର ଅଧିକାରୀ ହେବ । ତେଣୁ ଲିସା ତାକୁ ଘରର ଦୂରବସ୍ଥା ସବୁ କିଛି ଖୋଲି କହି ଦେଇଥିଲା ବିକାଶ ଆଗରେ । ବିକାଶ ବୁଝି ପାରିଥିଲା ଲିସାର ଅବସ୍ଥା ତେଣୁ ସେ ଜାଣିଶୁଣି ସେଦିନ Interview କୁ Miss କରିଥିଲା । ଲିସା Lectureship ରେ Appointment ପାଇଥିଲା ।

ବିକାଶ ଯେ ବେକାର ଥିଲା, ତାହା ନୁହେଁ, ସେ ମଧ୍ୟ Bank ରେ Branch Manager ହିସାବରେ Appointment ପାଇଥିଲା । ସେହି-ଦିନଠାରୁ ଲିସାର ଜୀବନରେ ଘୋର ପରିବର୍ତ୍ତନ । ବୁନାକୁ College ରେ ପାଠ ପଢାଇଲା; ଭାଇକୁ High School ରେ Admission କରାଇଲା । ଲିସାର ସବୁ କିଛି ସ୍ୱାର୍ଥ ସମର୍ପି ଦେଇଥିଲା ଏହି ଦୁଇ ଜଣଙ୍କ ପଛରେ । ଦରମାର ସବୁତକ ଟଙ୍କା ସେମା-ନଙ୍କ ପିଛାରେ ଖର୍ଚ୍ଚ କରି ଦେଉଥିଲା ।

Bank ରୁ ଟଙ୍କା ନେଇ ଅତି ତରବରରେ ଫେରୁଥିଲା ଲିସା ସେଦିନ, ଟିକେ ଶୁଣିବେକି Madam ? Branch Managerଙ୍କ ଡାକରେ ଲିସା ଫେରି ଆସିଲା । "କ୍ଷମା କରିବେ Madam, ମୁଁ.........ଆପଣଙ୍କୁ Disturb କଲି" । ଲିସା କହିଲା "ଆରେ ନା ଏଥିରେ Disturb କରିବାର କଣ ଅଛି ? କିନ୍ତୁ ମୁଁ ଆପଣଙ୍କୁ ପୂର୍ବରୁ କେଉଁଠି ଦେଖିଲା ପରି ମନେ ପଡୁଛି ।

ବିକାଶ କହିଲା ହଁ ମନେ ପକାନ୍ତୁ ଆପଣଙ୍କ Interview ବେଳର କଥା । ଲିସା କହିଲା ହଁ ମନେ ପଡ଼ିଲା ଆପଣଙ୍କ ନାଁ ତେବେ ବିକାଶ ମିଶ୍ର । ଆଚ୍ଛା କ'ଣ ଦରକାର ଥିଲା ମୋତେ ଡାକିଲେ ।

ବିକାଶ କହିଲା– ନା ଦରକାର ସେମିତି କିଛି ନାହିଁ, ତେବେ ଯଦି କିଛି Mind କରିବେନି ମୁଁ ଆପଣଙ୍କୁ ଗୋଟେ କଥା ପଚାରିବି ? ଲିସା–ପଚାରନ୍ତୁ ।



Digitized by PPRACHIN, SOA

ବିକାଶ- ଆଚ୍ଛା Madam ଆପଣତ ଆପଣଙ୍କର ସବୁ ଦରମା ପ୍ରତି ମାସରେ ଉଠାଇ ନେଉଛନ୍ତି, କିଛି ତ ବାଲନ୍‌ସ ରଖୁନାହାଁନ୍ତି । 'ବାଲନ୍‌ସ' ! ଆଶ୍ଚର୍ଯ୍ୟ ହୋଇ ପଚାରିଲା ଲିସା । ବିକାଶ- ହଁ ବ୍ୟାଙ୍କ ବାଲନ୍‌ସ ଅନ୍ତତଃ ଆପଣଙ୍କ ନିଜ ପାଇଁ କିଛି ବାଲନ୍‌ସ ? 'କ'ଣ ହେବ ସେ ବାଲନ୍‌ସ ?' ଲିସା ପଚାରିଲା । ବିକାଶ ଆଜିର ଦୁନିଆରେ ବାଲନ୍‌ସ ଅନେକ କିଛି କରିପାରେ ନଚେତ୍ ଆପଣଙ୍କ ବାହାଘର ପାଇଁ ତ ବାଲନ୍‌ସଟା ଯୌତୁକର କାମ କରନ୍ତା । ଏଥିରେ ତ ଆପଣଙ୍କର ବାପା ମାଆଙ୍କର ଚିନ୍ତାଟା ଦୂର ହୁଅନ୍ତା । କାରଣ ଗୋଟେ ଝିଅକୁ ବାହା ଦେବାଠାରୁ ଯୌତୁକ ଯୋଗାଡ଼ କରିବା ହିଁ ବଡ଼କଥା ।

କାହିଁକି, ଯୌତୁକ ନ ଦେଇ 'ଣ ବାହାଘର ହୋଇ ପାରିବନି ? ଅସମ୍ଭବ, ଯୌତୁକ ଦୁନିଆଁରେ ପୁଣି ଯୌତୁକ ଦେବେନି, ବିକାଶ କହିଲା ।

ଲିସା କହିଲା 'ନା, ମୋର ବାଲନ୍‌ସ ରଖିବା ଦରକାର ନାହିଁ । ମୋଟା ଯୌତୁକ ଦେଇ ଗୋଟେ ପୁଅକୁ ସ୍ନେହ ମମତାଠାରୁ ଦୂରରେ ରଖିବାକୁ ମୁଁ ଚାହେଁନି ?

ପୁଅମାନେହିଁ କ'ଣ ଯୌତୁକର ଅଧିକାରୀ ? ଝିଅ ମାନଙ୍କର କ'ଣ କିଛି ନାହିଁ ? ବାହାଘର ବେଳେ କଣ ପୁଅ ଏକା ବେଦୀରେ ବସେ ? ଝିଅ କଣ ବସେନି ? ତେବେ ଝିଅ କାହିଁକି ଯୌତୁକ ଦାବୀ କରିବନି ?

ବିକାଶ– ସେ କଥା କଣ ଆଜିର ଯୁବସମାଜ ବୁଝିବେ ?

ଲିସା– ଆପଣ ଯଦି ତା ଭିତରୁ ଜଣେ ବୁଝିବା ଲୋକ ହୁଅନ୍ତି !

ବିକାଶ– ମୁଁ ଯେ ନିରୁପାୟ; ମୋର ଯୌତୁକର ମୂଲ୍ୟ ମୋ ବାପା ନିର୍ଣ୍ଣୟ କରିବେ ।

ଲିସା– ତାହେଲେ ଆପଣ ନିଜକୁ ଅନେକ ଟଙ୍କାର ଯୌତୁକରେ ବିକ୍ରି କରିବେ, କିନ୍ତୁ ମୁଁ ମୋ ବାହାଘର ବେଳକୁ ମୋ ତରଫରୁ ନିଶ୍ଚୟ ଯୌତୁକ ଦାବୀ କରିବି । ଲିସାର କଥା ଶୁଣି ଜୋର୍‌ରେ ହସିଉଠିଲା ବିକାଶ । ଲିସା ଫେରି ଆସିଥିଲା, ତା ଫେରିବା ବାଟକୁ ଏକ ପଲକରେ ଚାହିଁ ରହିଥିଲା ବିକାଶ ।

ଧନ୍ୟ ଏହି ଝିଅଟି । ଦୁନିଆଁଟା ଯେତେବେଳେ ଯୌତୁକର ନିଆଁରେ ଜଳିଲଣି ଏ କଣ ଜଳ ଢ଼ାଳି ଲିଭାଇ ଦେଇ ପାରିବ ?

ସେଦିନ ବିକାଶର ବାପାଙ୍କୁ ତାଙ୍କ ଘରେ ଦେଖି ଲିସା ଆଶ୍ଚର୍ଯ୍ୟ ହୋଇ ଯାଇଥିଲା । ଏତେବଡ଼ ଲୋକଙ୍କର ପାଦ ଏକ ସାଧାରଣ ଘରେ ପଡ଼ିବଟା ଆଜି କାଲିକା ଯୁଗରେ ଅନେକ ଭାଗ୍ୟର କଥା । ଲିସା କେବଳ ନମସ୍କାରଟିଏ କରି ଭିତରକୁ ଚାଲିଯାଇଥିଲା ଜଳଖିଆ ଉଦ୍ଦେଶ୍ୟରେ । ଲିସା କିନ୍ତୁ ଆଶ୍ଚର୍ଯ୍ୟ ହେଉ-ଥିଲା ବିକାଶ ବାପାଙ୍କର ଆଗମନର ଉଦ୍ଦେଶ୍ୟ କ'ଣ ?

ଅପା' ଅପା ଡାକି ପଶିଆସିଲା ଲୀଟୁ, ମୁହଁରେ ତାର ହସର ଲହରୀ, ସେ କହିଲା– ଅପା ତୋତେ ଗୋଟିଏ ଶୁଭ ଖବର ଜଣାଇବି । ମୋତେ କ'ଣ ଦେବୁ କହିଲୁ ?

ଲିସା– "ଜେନା ଗୁଡ ଶୁଭ ଖବର ରଖିଥିବୁ । ଗଣିତରେ ୧୦୦ ନହେଇ ଇଂରାଜୀରେ ୯୦ ଏଯାତ ।"



Digitized by PPRACHIN, SOA

ଲୀତୁ– ନା, ସେ କଥା ନୁହେଁ । ସେତ ଅତି ସାଧାରଣ କଥା, ତା ଠାରୁ ବଳି ଖୁସିର କଥା ।

ଲିସା– ସବୁ କାମରେ ଡିଷ୍ଟର୍ବ କରିବା ତୋର ଗୋଟିଏ ବଦଭ୍ୟାସ । ଦେଖୁଛୁ ଘରେ ଜଣେ ଭଦ୍ର ଲୋକ ବସିଛନ୍ତି, ତୁ ଏତେ ପାଟିଟା କରୁଛୁ କାହିଁକି ?

ଲୀତୁ– ହଉ ଭଲ ହେଲା । ତୁ ପଛେ କିଛି ନ ଦେ.....ହେଲେ କଥାଟା ଶୁଣ । ଜାଣିଛୁ ଅପା, ମଉସା ତୋତେ ବୋହୂକରି ନେଇଯିବେ କହୁଛନ୍ତି ।

ଲିସା– କ'ଣ କହିଲୁ ? ବୋଉ ତେବେ ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଉଛି ?

ଲୀତୁ– ନା ମଉସା ନିଜେ ଆସିଛନ୍ତି ।

ଲିସା– କ'ଣ ଯୌତୁକ ଟଙ୍କାର ହିସାବ କରିବା ପାଇଁ !

ଲୀତୁ– ହଁ, ଅପା ତୁ ହଁ କରିଦେ'ନା । ତୁତ ଚାକିରୀ କରୁଛୁ, ଯୌତୁକ କ'ଣ ଦେଇ ପାରିବୁନି ! ତୋତେ ମୋ ରାଣ ଅପା, ତୁ ମନା କରନା ।

ଲିସା ଆଖିରେ ଲୁହ ଜମି ଆସିଥିଲା, ଯୌତୁକ ଦେଇ ଏହି ଘରୁ ଗୋଡ କାଢିଲା ପରେ ତା'ର ଭାଇ, ଭଉଣୀ ଦୁଇଟିର ଅବସ୍ଥା କ'ଣ ହେବ ?

ଲୀତୁ– ଛି ଅପା, ପ୍ରଥମରୁ ତୁ କାନ୍ଦୁଛୁ । ଆମ-ପାଇଁ ଚିନ୍ତା କରନା, ଆମେ ଆମର ବୃତ୍ତି ପଇସାରେ ଚଳିଯିବୁ । ତୁ ସୁଖରେ ରହିଲେ ଆମେ ତଥା ବୋଉ କ'ଣ ଖୁସି ହେବୁନି ?

ଆଖିରୁ ଲୁହ ପୋଛି ଗ୍ଲାସ ଝକଝକିଆ ଟେବୁଲ ଉପରେ ଥୋଇଦେଲା ଲିସା ।

ବିକାଶ ବାପା– କାହିଁକି ଏତେ କଷ୍ଟ କଲୁ ମା, ଏ ସବୁ ରଖିଦେ, ତୁ ଯେବେ ଆମ ଘରକୁ ବୋହୂ ହୋଇ ଯିବୁ ସେହି ଦିନ ତୋ ହାତରୁ ଖାଇବି ।

ଲିସା–କ୍ଷମା କରିବେ ମଉସା, ମୁଁ ଆପଣଙ୍କ ଘରେ ବୋହୂ ହେବା ପାଇଁ ଯୋଗ୍ୟା ନୁହେଁ, କାରଣ ମୋଟା ଯୌତୁକ ଦେବାର କ୍ଷମତା ଆମର ନାହିଁ ।

ବିକାଶ ବାପା–ମୋର ଯୌତୁକ ଦରକାର ନାହିଁ, କେବଳ ତୋପରି ବୋହୂଟିଏ ମୋର ଦରକାର ?

ଲିସା ତାର ଯୌତୁକ ଠିକ୍ ଦାବୀ କରିଥିଲା ନିର୍ବନ୍ଧ ଦିନ । ତା'ର ଯୌତୁକଥିଲା ସାମାନ୍ୟ, ସେ କହିଥିଲା, ତାର ସାନ ଭାଇ କୁନା ମଣିଷ ହେବାଯାଏ ଘରର ଦାୟିତ୍ୱ ସେ ବହନ କରିବ । ବିକାଶ ତଥା ତା ବାପା ଏଥିରେ ଖୁସିହୋଇ ଲୀସାର ବୁଦ୍ଧିକୁ ତାରିଫ କରିଥିଲେ । ଆଜି ତାର ଦରମା ଦେବାର ଶେଷ ପାଳି ଏବଂ ସେଥିରେ ସେ ଏକ ଭୋଜିର ଆୟୋଜନ କରିଥିଲା, କେବଳ ଯୌତୁକ ବିରୋଧୀ ଯୁବ ସମାଜ ପାଇଁ ।

ବିକାଶର ଡାକରେ ଲିସା ଫେରି ଆସିଥିଲା ପୁଣିଥରେ ଅତୀତରୁ ବର୍ତ୍ତମାନକୁ ।

କିନ୍ତୁ ଗାଡ଼ିରୁ ଓହ୍ଲାଇ ଆଶ୍ଚର୍ଯ୍ୟ ହୋଇଥିଲା ଦୀର୍ଘ ଦଶବର୍ଷ ପରେ ତପନକୁ ଦେଖି ପ୍ରତିଶୋଧର ନିଆଁ ଜଳି ଉଠିଥିଲା ତା ମନ ତଳେ । ତପନ କିନ୍ତୁ ଲିସାକୁ ଦେଖି ତା ପାଖକୁ ଦୌଡ଼ି ଆସିଥିଲା । ଲିସା ମୁହଁରୁ ବାହାରି ଆସିଲା କେଇପଦ-କ'ଣ ଏତେ ଦିନପରେ ତେଲିଆ ମୁଣ୍ଡରେ ତେଲ ଦେବାପାଇଁ ଆସିଛ ? ପବିତ୍ରତା ମଧ୍ୟରେ ପାପର ବହ୍ନି ଜାଳିଦେବା



Digitized by PPRACHIN, SOA

ପାଇଁ ଏ ଭେଜିରେ ଆପଣଙ୍କ ସ୍ଥାନ ନାହିଁ । ଏ ତ ଯୌତୁକ ବିରୋଧି ପାର୍ଟିର ଭେଜି ।

ତପନ କାନ୍ଦିଉଠିଥିଲା ଏବଂ ଲିସାକୁ ଧରି କହିଲା "ତୁ ଆଜି ମୋତେ ଲଜ୍ଜା ଦେଏନା ଭଉଣୀ ତୁ ମୋ ଠାରୁ ଅନେକ ଛୋଟ ହେଲେ ମଧ୍ୟ ଏକ ଉଚିତ୍ ଶିକ୍ଷା ଦେଇଛୁ । ମୁଁ ଆଜି ଅନୁତପ୍ତ, ମୁଁ ମୋର ସମସ୍ତ ଯୌତୁକ ଫେରାଇ ଦେଉଛି ଦାନ ଆକାରରେ । ତେଣୁ ତୁ ମଧ୍ୟ ତୋର ଯୌତୁକ ଫେରାଇ ନେ, ଏହା କହି ପାଞ୍ଚଲକ୍ଷ ଟଙ୍କାର ଏକ ଚେକ୍ ବଢାଇ ଦେଉଥିଲା ।

ଲିସା କାନ୍ଦି ଉଠିଥିଲା, ଆପଣ ଯେତେହେଲେ ମୋର ବଡଭାଇ ଗୁରୁଜନ, କ୍ଷମା କରିବା ମୋର ଶକ୍ତି ନାହିଁ, କିନ୍ତୁ ଏ ଟଙ୍କା କ'ଣ କରିବି, ଏଇୟା କ'ଣ ମୋର "ପ୍ରତିଦାନର ପ୍ରତିଫଳ" ମୁଁ ମୋର କର୍ତ୍ତବ୍ୟ ମାତ୍ର କରିଛି, ଆପଣ ଏତେଦିନପରେ ସୁପଥକୁ ଫେରି ଆସିଛନ୍ତି ତାହାହିଁ ହେଉଛି ମୋର ଭାଗ୍ୟ ।

ବିକାଶ କେବଳ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲା ତପନକୁ ଦେଖି । କାରଣ ତପନ ଥିଲା ତା ଅପା ବିଥିକାର ସ୍ୱାମୀ ଏବଂ ସେ ବିକାଶର ବାହାଘରକୁ ମଧ୍ୟ ଆସି ନଥିଲା କେବଳ ଏଇ ଯୌତୁକ ନେଇନି ବୋଲି । ହେଲେ ଲିସା କାହିଁକି ଏ କଥା ଆଜିଯାଏ ଲୁଚାଇ ରଖିଥିଲା, କ'ଣ ଏଇଥିପାଇଁ ତା ପ୍ରତିଦାନର ପ୍ରତିଫଳ ପାଇଁ ? ... ... ... ... ... ...



# ସ୍ନେହ ଓ ମମତା

● ମମତା ପଟ୍ଟନାୟକ
+୩ କଳା ୨ୟ ବର୍ଷ

ରିତୁ ଟିକି ଝିଅଟିଏ । ଗୋଲାପ ଫୁଲ ପରି ଭାରି ସୁନ୍ଦରୀ । ବାପା, ମାଆଙ୍କର ସେ ହେଉଚି ଗୋଟିଏ ବୋଲି ଝିଅ । ସେଥିପାଇଁ ଖୁବ୍ ଗେଲବସର । ଆଉମଧ୍ୟ ଭାରି ନାକ କାନ୍ଦୁରୀ ଫୁଲେଇ ମଧ୍ୟ । କଥା କଥାକେ କାନ୍ଦ । ବାପା ତା'ର Income Tax ଅଫିସରେ ବଡ଼ ହାକିମ ଅର୍ଥାତ Boss ର ଚାକିରି କରନ୍ତି । ଖାଇବା, ପିନ୍ଧିବା ଓ ଲଗାଇବା ଇତ୍ୟାଦିରେ ଅଭାବ ନାହିଁ । କୌଣସିଥିରେ ରିତୁ ଅଝଟ ହେଲେ ବାପାତା'ର ଅନେକ ଜିନିଷ ଦେଇ ତାକୁ ଭୁଲାଇ ଦିଅନ୍ତି । ବାପାତା'ର ଅଫିସରୁ ଘରକୁ ଫେରିଲେ ଝିଅକୁ ଗେଲ କରିବାରେ ବ୍ୟସ୍ତ ରହନ୍ତି । ରିତୁ କିଛି କଥା ନ ଥାଇ ଅଝଟ ହେଲେ ବାପା ତା'ର



Digitized by PPRACHIN, SOA

ମାଆଙ୍କ ନିକଟକୁ ଝିଅକୁ ପଠାଇ ଦିଅନ୍ତି । ମାଆଙ୍କ ନିକଟରେ ରିତୁର ସବୁ ଅଳି ଓ ଅଝଟ ।

କିନ୍ତୁ ମାଆ ରିତୁକୁ ସବୁବେଳେ ଗେହ୍ଲା କରନ୍ତିନି । ସମୟେ ସମୟେ କଡ଼ା ଶାସନ ବି କରନ୍ତି । ବେଶି ରାଗିଗଲେ ବିଚାରୀ ରିତୁର ନାଲି ଟହ ଟହ ଗାଲରେ ଦୁଇଟି ଶକ୍ତ ଚାପୁଡ଼ା ମାରିବାକୁ ମଧ୍ୟ ପଛାନ୍ତି ନାହିଁ । ସେତେବେଳେ ରିତୁକୁ ଆଉ ସମ୍ଭାଳେ କିଏ, ସେ ଗଡ଼ାଧରି ଖୁବ୍ ଜୋର୍‌ରେ ଭେଁ ଭେଁ ହୋଇ କାନ୍ଦେ । ତା'ର ନୀଳପଦ୍ମ ପରି ଆଖି ଦୁଇଟି ଏକ ରକମର ଶୁଖି ଯାଇଥାଏ । ବାପା ତାର ବସିବା ଯାଗାରୁ ଉଠିଆସି ଲୁହ ପୋଛି ଦିଅନ୍ତି । ତାକୁ ଭୁଲେଇବାକୁ ଅନେକ ବାହାନା କରନ୍ତି ଏବଂ ବାହାରକୁ ବୁଲେଇ ନେଇ ଯାଆନ୍ତି । ନାନା ପ୍ରକାର ଖେଳଣା ମଧ୍ୟ ଆଣି ଦିଅନ୍ତି । ପୁଣି ପ୍ରତିଶ୍ରୁତି ଦିଅନ୍ତି ଏ ପୁରୁଣା ମାଆକୁ ବଦଳାଇ ଦେବାକୁ । ଝିଅଟି ସଙ୍ଗେ ସଙ୍ଗେ ଲୁହ ପୋଛି କହେ "ହଁ ବାବା ଆଉ ଗୋଟିଏ ଭଲ ନୂଆ ମାଆ ଆଣିବା । ଏ ମାଆଟା ବଡ଼ ବଦ୍‌ମାସ୍ ହୋଇ ଗଲଣି ।" ପିଲଟିର ବୟସ କମ୍ ହୋଇଥିବାରୁ ସେ ବା କ'ଣ ଜାଣେ ନୂଆ ମାଆମାନେ କିପରି ହୋଇ ଥାଆନ୍ତି ।

କିନ୍ତୁ ରିତୁ ତା'ର ମାଆକୁ ଖୁବ୍ ଭଲପାଏ । ମାଆ ମଧ୍ୟ ତାକୁ ଖୁବ୍ ଭଲ ପାଆନ୍ତି, କେତେ ବୋକ ଦିଅନ୍ତି, କେତେ ମିଠା ମିଠା କଥା ମଧ୍ୟ କହନ୍ତି । ଜର ହେଲେ ସାରା ରାତି ମାଆ ତାର ଅନିଦ୍ରା ହୋଇ କେତେ ସେବା କରନ୍ତି । ମାଆ କୋଳଟି ମଧ୍ୟ ଭାରି ଉଷୁମ । ମାଆର ଛାତିରେ ମୁହଁ ଗୁଞ୍ଜି ଦେଲେ ଭାରି ଭଲ ନିଦ ହୁଏ । ମାଆ ମଧ୍ୟ ତାକୁ ପ୍ରତ୍ୟେକ ରାତିରେ ନୂଆ ନୂଆ ଗୀତ ଶୁଣାଇ ଦିଅନ୍ତି । ରିତୁକୁ ମଧ୍ୟ ସବୁଦିନ ସଫା ଫ୍ରକ୍, ପ୍ୟାଣ୍ଟ୍ ଆଦି ପିନ୍ଧାଇ ଦିଅନ୍ତି । କେତେ ଭଳିକି ଭଳି Style ର ପୋଷାକ ପିନ୍ଧାଇ ଦିଅନ୍ତି । ସ୍କୁଲକୁ ବହି ଖାତା ସଜାଡ଼ି ଦିଅନ୍ତି ଓ ପ୍ରତ୍ୟେକ ଦିନ ଭଳିକି ଭଳି ନୂଆ ରକମର ଟିଫିନ୍ ସଜାଡ଼ି ସ୍କୁଲକୁ ପଠାନ୍ତି । ତଥାପି ମାଆ ବେଳେ ବେଳେ ମାରନ୍ତି । ସ୍କୁଲରୁ ଆସି ବହିପତ୍ର ଏଣେ ତେଣେ ପକାଇଲେ, ହାତ ନ ଧୋଇ ଖାଇଲେ, ଖାଇବା ଜିନିଷ ନଷ୍ଟକଲେ ଏବଂ ଅନ୍ୟକୁ ଖରାପ ବ୍ୟବହାର କଲେ ମାଆ ବଡ଼ ବଡ଼ ଆଖିରେ ଅନାନ୍ତି । ତା ମାଆର ସୁନ୍ଦର ମୁଖ ମଣ୍ଡଳ ସେତେବେଳେ ରିତୁକୁ ଖୁବ୍ ଭୟଙ୍କର ଦେଖାଯାଏ ।

କିନ୍ତୁ ଆଜିକାଲି ରିତୁ ଅଧିକ କାନ୍ଦୁରୀ ହୋଇଗଲଣି । ରିତୁ ଭାବୁଛି ମାଆ ତାକୁ ଆଜିକାଲି ଜମା ଭଲ ପାଉନି, ସେଥିପାଇଁ ତା'ର ମନ ଭାରି ଦୁଃଖ । ମାଆ ତା'ର ପ୍ରାୟ ପଖାଳଭାତ, ଶାଗଭଜା ଏବଂ ଚାକର ରାମୁ ଆଣି ଦେଇଥିବା ଶୁଖୁଆ ଭଜିକି ଖାଆନ୍ତି ମାତ୍ର ଦିଅନ୍ତି ନାହିଁ । ରିତୁର ଭାରି ରାଗ ହୁଏ । ମାଗିଲେ କହନ୍ତି ଦେହ ଖରାପ ହେବ । ରିତୁକୁ ଅନ୍ୟାନ୍ୟ ଜିନିଷ ଦିଅନ୍ତି । ମାତ୍ର ତାଙ୍କ ଘରର ଚାକର ରାମୁର ଝିଅକୁ ସେଦିନ ମାଆ ପଖାଳ ଭାତ ଏବଂ ଶୁଖୁଆ ଭଜାର ଫଡ଼ାଟିଏ ଖାଇବାକୁ ଦେଇଥିଲେ । ସେଦିନ ରିତୁ ର ଭାରି ରାଗ ହେଲା ସେଥିପାଇଁ ସେ ତା'ର ପଖାଳ କଂସାଟିକୁ ସେଇଠି ଓଲଟାଇ ଦେଇଥିଲା । ମାଆ ତାକୁ ସେଦିନ ବେଶ୍ ରାଗ ଶାନ୍ତ ହେବା ପର୍ଯ୍ୟନ୍ତ ମାରିଲେ । ମୁଁ ସେଦିନ ମଧ୍ୟ ଭାବିଥିଲି ବାବାଙ୍କୁ କହି ଏ ରାଗୀ ମାଆଟାକୁ ବଦଳାଇ ଦେବାପାଇଁ । କିନ୍ତୁ ତା'ର ମନେ ପଡ଼ିଗଲା ବାବାମଧ୍ୟ ମାଆଙ୍କୁ ଖୁବ୍ ଭଲ ପାଆନ୍ତି । ମତେ ଯେପରି ବାବା ବୋକ ଦିଅନ୍ତି ମାଆକୁ ମଧ୍ୟ ସମୟେ ସମୟେ ବାବା ବୋକ ଦିଅନ୍ତି । ପୁଣି ଭାବିଲା "ଏ ମାଆଟା କୁଆଡେ ପଳାନ୍ତା କି, ନୂଆ ମାଆ ମୋର



Digitized by PPRACHIN, SOA

ଜଲଦି ଆସନ୍ତେ, ଭରି ମଜ୍ଜା ହୁଅନ୍ତା । ନୂଆ ମାଆ ମଧ୍ୟ ଖୁବ୍ ଗେଲ କରନ୍ତା ମୋତେ ।”

ଅନ୍ୟ ଦିନେ ସେହି ଘମୁର ଝିଅକୁ ରିତୁର ପୁରୁଣା ନାଲି ଓ କଳାମିଶା ଛିଟ ଫ୍ରକଟାକୁ ମାଆ ଦେଇଦେଲେ । ରିତୁର ରାଗ ଦେଖିବ କିଏ । ଛୋଟ ମୁଣ୍ଡରେ ଛୋଟ ବୁଦ୍ଧି ରିତୁର ମୁଣ୍ଡକୁ ସେଦିନ ବ୍ୟସ୍ତ କରି ପକେଇଲା । କେବଳ କାନ୍ଦିବାକୁ ଲାଗିଲା । ତାଙ୍କ ଠାକୁର ଘରେ ଠାକୁରଙ୍କ ଫଟୋ ନିକଟରେ ବସି ଖାଲି କାନ୍ଦିଲା ଏବଂ ଠାକୁରଙ୍କ ନିକଟରେ କହିଲା ହେ ଠାକୁର ! ମାଆ ମୋତେ ଜମା ଭଲ ପାଉନି ! ହେ ଠାକୁର, ତୁମେ ମୋର ଏଇ ପୁରୁଣା ମାଆକୁ ନେଇଯାଇ ନୂଆ ମାଆଟିଏ ଆଣିଦିଅ । ସେଇଠି ବସି କାନ୍ଦି କାନ୍ଦି କେତେବେଳେ ଶୋଇ ପଡ଼ିଛି ସେ ଜାଣିନି । ମାଆ ତା’ର ଝିଅକୁ ଖୋଜି ଖୋଜି ବ୍ୟସ୍ତ ହୋଇ ଠାକୁର ଘରକୁ ଯାଇ ଦେଖିଲେ ରିତୁ ତାଙ୍କର କଇଁ କଇଁ ହୋଇ କାନ୍ଦି ଶୋଇ ପଡ଼ିଛି । ସେ ଝିଅକୁ ତଳୁ ଉଠାଇନେଇ କାନ୍ଦି କାନ୍ଦି ଗେଲ କଲେ, ବାପା ମଧ୍ୟ ବୋବାଳ ଦେଇ ଝିଅକୁ ନିଜ କୋଳକୁ ନେଲେ । ସେତେବେଳେ ଝିଅର ଦେହରେ ଖୁବ୍ ତାତି, ବାପା ମାଆ ଆଶ୍ଚର୍ଯ୍ୟ ହୋଇଗଲେ । ଡ଼ାକ୍ତରଙ୍କୁ ଡକାଇ ଝିଅକୁ ପରୀକ୍ଷା ନିରୀକ୍ଷା କରାଇଲେ ଏବଂ ଡ଼ାକ୍ତରଙ୍କ ପରାମର୍ଶ ଅନୁଯାୟୀ ଔଷଧ ସେବନ କରିବା ଦ୍ୱାରା ତଥା ମାଆଙ୍କର ସେବାଦ୍ୱାରା ସମ୍ପୂର୍ଣ୍ଣ ରୂପେ ଆରୋଗ୍ୟ ଲାଭକଲା । ରିତୁ ଆଖି ଖୋଲିଲା, ଦେଖିଲା ମାଆ ତାକୁ କେତେ ଆଦରରେ ଅନିଦ୍ରା ହୋଇ ସେବା କରୁଛନ୍ତି ।

ରିତୁର ଆଖିରୁ ଲୋତକ ବର୍ଷା ପରି ଝରିବାକୁ ଲାଗିଲା । ସେ କାନ୍ଦ କାନ୍ଦ ହୋଇ କହିଲା, “ମାଆ ମୁଁ ତୁମର କେବେ ଅବାଧ୍ୟ ହେବିନି । ତୁମ କଥା ମାନିବି, ତୁମେ ଯାହା କହିବ ଶୁଣିବି । ତା ହେଲେ ଭଗବାନ ନିଶ୍ଚୟ ମୋତେ ଦେଖାଦେବେ ।” ରିତୁର ମାଆ ଏ କଥା ଶୁଣି କାନ୍ଦ କାନ୍ଦ ହୋଇ କହିଲେ, “ତୁଣ୍ଡି ଭଗବାନଙ୍କୁ ଖୋଜିବାକୁ ଠାକୁର ଘରେ ବସିବା କ’ଣ ଦରକାର । ଅସଲ ଭଗବାନ ପରା ବାପା ଓ ମାଆ !” ରିତୁ ମାଆ ଛାତିରେ ମୁହଁ ଗୁଞ୍ଜି କାନ୍ଦିବାକୁ ଲାଗିଲା ଖୁସିରେ । ରିତୁ ଏଥର ଜାଣିଲା ଭଗବାନ ହେଉଛନ୍ତି ପ୍ରକୃତରେ ବାପା ଓ ମାଆ । ସେହି ଦିନ-ଠାରୁ ଆଉ ଅବାଧ୍ୟ ହେଲାନି, ଅଳି କଲାନି । ସୁନା ପିଲାଟିଏ ହୋଇଗଲା । ମାତ୍ର ନାକ କାନ୍ଦୁଣୀ ଓ ଗେହ୍ଲୀ ହୋଇ ରହିଲା । ଭଗବାନ ବଡ଼ ବିଚିତ୍ର ଏ ସୃଷ୍ଟିରେ । ସେହି ଦିନଠାରୁ ରିତୁ ଗୁରୁଜନମାନଙ୍କୁ ସମ୍ମାନ ଦେବା ଶିଖିଲା । ପ୍ରକୃତରେ ବାପା ଓ ମାଆ ପିଲାମାନଙ୍କର ପଥ ପ୍ରଦର୍ଶକ ।





Digitized by PPRACHIN, SOA

# ଅବହେଳିତ ନାୟିକାର ଇତିକଥା

( କବିତା ବିଭାଗ )

● ରଶ୍ମି ଚୌଧୁରୀ
+୩ ତୃତୀୟ ବର୍ଷ କଳା

ମନକୁ ମୋ ଆସିଥିଲ ବୁଲି ତୁମେ,
ନେଇ କିଛି ପ୍ରେମର ପୁଆର ।
ହାତରେ ମୁଠାଇ ଆଣିଥିଲ ତୁମେ,
କିଛି ଲାଲ ରଙ୍ଗର ଅବିର ।
ସାଙ୍ଗରେ ତୁମେ ବସନ୍ତ ଆଣିଲ, ଅବିର ଆଣିଲ,
ରଙ୍ଗେଇ ଦେଲ ମନର ଉଲ୍ଲକା ।
ସତେ ଅବା ମରୁଭୂମିକୁ ଦେଇଗଲ,
ସହସ୍ର ଇନ୍ଦ୍ରଧନୁର ଚିକ୍‌ମିକ୍ ସ୍ୱପ୍ନ ।
କିଏ ଯାଣିଥିଲା ଚିକ୍ ମିକ୍ ସ୍ୱପ୍ନ ପୁଣି ମିଛ ହୋଇଯାଏ,
ଆଉ ପୁଣି ନିଦ ଭାଙ୍ଗିଗଲେ ସ୍ୱପ୍ନ ଭାଙ୍ଗିଯାଏ ।
ମିଥ୍ୟା ସ୍ୱପ୍ନ ସବୁ ତୁମେ ହଜାଇ ଦେଲ ତାଗ କରି,
ମୋ ଜୀବନର ଅମାରାତିକୁ ଆଲୋକିତ କରି ।
ରାତି ସରିଗଲା, ଅନ୍ଧାର ଦୂରେଇ ଗଲା,
ଯମୁନା ଉଜାଣି ବହିଲାନି କି,
ଚଳନ୍ତା ରେଳ ଅଟକି ଗଲାନି ।
ମିଥ୍ୟା ସ୍ୱପ୍ନ ସବୁ ସରିଗଲେ ନିର୍ଦ୍ଦିଷ୍ଟ ଦିନରେ,
ମୁଁ ହତ୍‌ବାକ୍ ହୋଇଗଲି ନିଶାର ମୀନାରେ ।
ତୁମେ ପୁଣି ଚାଲିଗଲ,
ଆଉ କାହା ମନ ଗହନର ଚିତ୍ରପଟକୁ ।
ବାଣ୍ଟୁଥିବା ଅବିରରେ,
ନାଲି ନୀଳ ବସନ୍ତର ରଙ୍ଗଦେଇ ରଙ୍ଗିବାକୁ ।
ତୁମ ଗଲାପରେ ବିବର୍ଣ୍ଣ ଲୁହ ଝରିଲାନି,
କଣ୍ଠ ଫଟାଇ ଶବ୍ଦହୀନ କୋହ ଉଠିଲାନି ।
କେଜାଣି କେମିତି ଗୋଟାଏ ବସନ୍ତ ଶେଷେ,
ମୁଁ ଅବହେଳିତ ନାୟିକା ପାଲଟି ଗଲି ।

●



Digitized by PPRACHIN, SOA

# କିଛି ସ୍ମୃତି.......................

● ସୁଧାଂଶୁ ଶେଖର ସାମଲ
୩ୟ ବାର୍ଷିକ ବିଜ୍ଞାନ

ଘୁନେଲି ସପନ ମୋର... ... ... ... ... ... ... ... ...
ଶ୍ରେଗଇଣ ନେଇ
ବାଲିଘର ଭାଙ୍ଗିଦେଲ ତୁମେ
ତୁମଲାଗି ପର ଆକାଶ ଦିଶେନା ନୀଳ
ସାଗର ଦିଶେନା... ... ... ... ... ... ... ...
କୃଷ୍ଣଚୂଡ଼ା ନାଲି ଓଠୁ ହସ ବି ଝରେନା
ଜହ୍ନଗତି ଭରେନା ଗେମାଞ୍ଚ
ନିଃସଙ୍ଗ ଲାଗଇ ମୋତେ, କର୍ମ ଉଠେ ... ... ... ...
ଦୁଃଖର ସାମ୍ରାଜ୍ୟ,
ଲୁହଡାକି ଅନ୍ତରର ରଙ୍ଗମାନ ବୋଳି
ସ୍ନେହ ମୋର ଦେଇଛି ଯେତେକ
ଫେରଇଲ ତୁମ ହାତେ ତୁମବିନା...........
ବଞ୍ଚିବାଟା ଯନ୍ତ୍ରଣା-ଦାୟକ ।
ଯେତେ ପ୍ରେମ ଯେତେ ଆଶା
ସବୁ ତୁଚ୍ଛ......ସବୁ ମୂଲ୍ୟହୀନ
ପାରିବକି ଆଜି ତୋଳି ମନର ବେଳାରୁ...........
ଏଇ ବ୍ୟଥାର କଉଡ଼ି ।
ସ୍ୱପ୍ନ ମୋର ହଜିଯାଏ ସ୍ମୃତି ସବୁ ଚେଇଁ ଉଠେ
କିଏ ମୋର ଫେରଇବ ହଜିଲା ସମ୍ପଦ
ଆଜି ତୁମଠାରେ ମୋର ଏତିକି ମିନତି
ଦେଇ ପାରିବକି ମୋତେ ମୋ ସ୍ମୃତି ଫେରଇ
ଯେଉଁ ସ୍ମୃତି ଛାୟାର ଅଭୟ କବଚରେ
ବିତାଇଛି କେତେ ଗତି ତୁମର କୋଳରେ........

—★—

Digitized by PPRACHIN, SOA

## ତୁମେ ଆସିବ !!!

● ସଂଜିତ୍ କୁମାର ଭୂୟାଁ
ଏମ୍. ଏ. ଇଂରଜୀ (୨ୟ ବର୍ଷ)

ଆକାଶରେ
ଯେବେ ବନ୍ୟାଆସେ,
ସାଗର ଯେବେ ଶୁଖିଯାଏ
ମୋ ମନର ଝଡ଼
ପ୍ରଶ୍ନକରେ ଅଲକ୍ଷ୍ୟରେ
ତୁମେ କେଉଁଠି ?
ବିଶ୍ୱାସ କରେ
ତୁମ ସ୍ଥିତିରେ'
ବିଶ୍ୱାସ ରଖେ
ତୁମ ଆସିବାରେ,
ଧୂଳିସାତ୍ ହେବ
ମେଫିଷ୍ଟୋଫିଲିସ୍‌ର ଅଭିସାର
ପୋଡ଼ା ମାଟିରେ ସବୁଜ ଫେରିବ
ଅଭିସାରୀକା ପୁଣି
ନୈବେଦ୍ୟ ଧରିବ
ଅଧଚୋପା ରକ୍ତ
ଆମ୍ଭରେ ଆଶା ଭରିବ
ବିନାଶ ସୃଷ୍ଟି ସାଜିବ ;
ମୁଁ ନ ଥିବି
ସେମାନେ କହିବେ
ତୁମେ ଆସିବ !!।

## ହେ ଆଦର୍ଶ

● ବିନୋଦ କୁମାର ସାହୁ
+୨ ବିଜ୍ଞାନ (୨ୟ ବର୍ଷ)

ଆଦର୍ଶର ଅନ୍ୟନାମ ଗାଇବାକୁ
ଯାଏ ଆଜି
ସେ ଆଦର୍ଶର ଛାୟାତଳେ ରହି ।୧।
ଆଦର୍ଶର ତତ୍ତ୍ୱ ଠାରୁ
ଆଦର୍ଶର ଛାୟା ପାଇ
ଗାଏସିନା ମାତ୍ର
ଶୁଣିବାକୁ କେହି ଜଣେ ନାହିଁ ।୨।
ଆଦର୍ଶର ଛାୟା ତଳେ
ରହିବାକୁ କ୍ଷମ ମୁହିଁ
କେବଳ ହିଁ ସେ ବିବେକ ବଳେ
ଯେ ବିବେକ କହଇ ଆଦର୍ଶ
ସେ ବିବେକ ଆଦର୍ଶ ଉପରେ ।୩।



Digitized by PPRACHIN, SOA

# 'ଅନ୍ୟ ସୀମାନ୍ତ'

● ସୁବୋଧ ଦାଶ
+୩ ଦ୍ୱିତୀୟ ବର୍ଷ ବିଜ୍ଞାନ (ସମ୍ମାନ)

ଚାଲୁଥିଲି
ନାକସିଧା
କେଉଁ ଅଜଣା ଗଛ, ପାହାଡ, ପର୍ବତ ଡେଇଁ
ନଦୀ ସମୁଦ୍ର ଅତିକ୍ରମ କରି,
ହେଲେ କେବେବି କ୍ଲାନ୍ତ ହୋଇପଡୁ ନ ଥିଲି ।
ମୁଁ ଚାଲୁଥିଲି
ମୋ ଜୀବନର ସୀମାକୁ ଭେଟିବାକୁ ;
ଦେଖାହେଲା ଥରେ ;
ସେଇ ଗଛ, ପାହାଡ଼, ପର୍ବତ, ନଦୀ, ସମୁଦ୍ର
ଅତିକ୍ରମ କରିବାରେ
ଯେତେ ଅନାହୂତ, ଅବାଞ୍ଛିତ ମୁହୂର୍ତ୍ତର
ତିକ୍ତ ଅନୁଭୂତି ପାଇଥିଲି
ସେ ସବୁ ଭୁଲିଗଲି,
ବାଷ୍ପରୁଦ୍ଧ ହୋଇଗଲା କଣ୍ଠ,
ଅତି ଆନନ୍ଦରେ ଉଚ୍ଛୁଳି ଉଠି
ତା ହାତ ଧରି କହିଥିଲି,
"ତୁମେ ହିଁ ମୋ ଜୀବନର ଶେଷ ସୀମା !–
ନୁହେଁ ? "
"ନା– ମୋତେ ନୁହେଁ, "
ହାତ ଛଡେଇ ନେଇ
କେଉଁ ଏକ ଶୂନ୍ୟ ଦିଗନ୍ତକୁ ଦେଖେଇ କହିଲା,
"ତୁମକୁ ଚାଲିବାକୁ ହେବ ବନ୍ଧୁ !
ମୁଁ ନାଗର,
ତୁମ ଚିର ଆକାଂକ୍ଷିତ ସୀମା
ମୁଁ ନୁହେଁ ।
ମୋ କୋଳରେ ତୁମ ଥକା ମେଣ୍ଟାଇବା ପାଇଁ
ଜାଗା ଅଛି ସିନା
ହୃଦୟରେ ସାମାନ୍ୟତମ ସ୍ଥାନ ଟିକ୍ତ ନାହି । "
ସୀମା ଚାଲିଗଲା ।
ମୁଁ ଚାଲୁଥିଲି
ଏବେବି ଚାଲୁଛି
ସେ ଦେଖାଇଥିବା ଆଙ୍ଗୁଠି ସିଧା ।
ଯଦି ସୀମାକୁ ପୁଣି ଭେଟନ୍ତି
କେବେବି,
ତେବେ ହୃଦୟର ସମସ୍ତ ଆକ୍ରୋଶକୁ ଜିଭକୁ ଆଣି
ଚିତ୍କାର କରିଥାନ୍ତି,
"ସୀମା !
ସମସ୍ତଙ୍କ ଜୀବନର ଗୋଟେ ବୋଲି ସୀମା ଥିବାବେଳେ
ମୋ ଜୀବନର ଅନ୍ୟ ସୀମାନ୍ତଟି କାହିଁ ? "
ମୁଁ ଚାଲୁଥିଲି
ଏବେ ଥକିଗଲିଣି,
ଥକା ମେଣ୍ଟାଇବା ପାଇଁ
ସୀମାର କୋଳ ବି ଏବେ ସ୍ୱପ୍ନ ।



Digitized by PPRACHIN, SOA

# ଦୁଇଟି ଗଜଲ

• ଗୋବର୍ଦ୍ଧନ କିସାନ
+୩ କଳା (୨ୟ ବର୍ଷ)

## କବି

ତୁମେ କି ସେ ସନ୍ଧାନୀ
ଚିନ୍ତା ଓ ଚେତନାର ଆକାଶ ବୁକୁରେ
ଶବ୍ଦର ତାରା ଗଣି ଗଣି
କଳ୍ପନାର ଛାୟା ପଥେ
ମାୟାବୀ ସେ ଲେଖନୀ ପିଠିରେ ବସି
ଖୋଜୁଛ କି କବିତାର ସପ୍ତର୍ଷି ।

## ଶିଳ୍ପୀ

ତୁମେ ବି ସୃଷ୍ଟିର ମଣିଷଟି ନା !
ଜୀବନର ସବୁ କ୍ଳାନ୍ତି ଦୁଃଖ-ଆନନ୍ଦର
ଆଙ୍କିଦିଅ ନିଛକ ଛବି ଟିଏ ତମେ ।
ଯେ ସୃଷ୍ଟିର ଅଧରରେ
ମୋନାଲିସାର ହସ
ଆଉ ସର୍ବାଙ୍ଗରେ
କୋଣାର୍କର ନଗ୍ନ ବାସ୍ତବତା

# ନିଷିଦ୍ଧ ସ୍ୱପ୍ନ

• ହିମାଂଶୁ ଶେଖର ମହାପାତ୍ର
+୩ ବିଜ୍ଞାନ (ଶେଷବର୍ଷ)

ସ୍ୱପ୍ନ ତୁମେ ଆସନାହିଁ
ଗଭୀର ନିଶ୍‌ବଦ ପ୍ରହରେ
ଝରକାର ରେଲିଂ ପାର ହୋଇ
ଏହି ଦୁଇ ଆଖିପତା ଭିତରକୁ
ଶ୍ଳେରଟିଏ ପରି
ମୁଁ ଜାଣେ ।
ତୁମର କିଛି ଅସ୍ତିତ୍ୱ ନାହିଁ
ତୁମେ ପ୍ରତାରକ
ଠିକ୍ ଏକ ମରିଚିକା ସଦୃଶ୍ୟ
ଖାଲି ଦେଖାଦେଇ ହଜଯାଅ
ତୁମେ ଯେବେ ଆସିବାକୁ ଚାହଁ
ତେବେ ଗଭୀର ସେହି ନିଶ୍‌ବଦ ପ୍ରହରେ ନ ଆସି
ରଙ୍ଗୀନ ବହୁ ରୂପିଟିଏ ନ ସାଜି
ଆସ ଶୂନ୍ୟ ହସ୍ତରେ
ଥାଉ ଖୋଲା ହୃଦୟରେ
ତେବେ ମୁଁ ନିଶ୍ଚୟ
ହଁ ନିଶ୍ଚୟ
ତୁମକୁ ସ୍ୱାଗତ କରିବି.................. ।



Digitized by PPRACHIN, SOA

## ତୁମେ ଓ ମୁଁ

● ଶ୍ରୀ ଚିତ୍ତରଞ୍ଜନ ଜେନା
+୩ ଦ୍ୱିତୀୟ ବାର୍ଷିକ କଳା

ଆକାଶର ପୂର୍ବଦିଗେ ଜହ୍ନ ଯେବେ ଉଠେ,
ତୁମେ ଉଠ ମୋ ମନର ପୂର୍ଣ୍ଣ ପ୍ରାଚୀ ତଟେ ।
ସୂର୍ଯ୍ୟ ଯେବେ ଦିଶୁଥାଇ ଶିଶିର ବିନ୍ଦୁରେ,
ତୁମେ ଦିଶ ମୋ ମନର ଛୋଟ ଆଇନାରେ ।
ତୁମେ ଯେବେ ଲୁଚିଥାଅ ସାଗର ଗରଭେ
ମୁଁ ଖୋଜେ ହୃଦୟର ଗଭୀର ଆବେଗେ ।
ତୁମ ଯେବେ ଲୁଚିଥାଅ କଳା ମେଘ ତଳେ,
ମୁଁ ଦେଖେ ବିଜୁଳିର ଝଲକ ମଧ୍ୟରେ ।
ତୁମେ ଥିଲେ ଧରଣୀର ସବୁଜ ପତ୍ରରେ,
ମୁଁ ଦେଖେ ଚନ୍ଦ୍ରମାର ଶୁଭ୍ର ଆଲୋକରେ ।
ତୁମେ ଯେବେ ଲୁଚିଥାଅ ପୁଷ୍ପ ଗହଣରେ,
ମୁଁ ଖୋଜୁଥାଏ ତେବେ ଭ୍ରମର ରୂପରେ ।
ମୁଁ ଥିଲେ ସାଗରର ବାଲୁକା ଶଯ୍ୟାରେ,
ମୁକ୍ତାରୂପେ ତୁମେ ଥାଅ ମୋ ହୃଦୟ ଭିତରେ ।
ମୁଁ ଯେବେ ପାଏ କେବେ ସାମାନ୍ୟ ଯନ୍ତ୍ରଣା,
ତୁମ କଣ୍ଠେ ଫୁଟେ ତେବେ ସଙ୍ଗୀତ ମୂର୍ଚ୍ଛନା ।
ସନ୍ଧ୍ୟା ବେଳେ ଘଣ୍ଟା ଯେବେ ବାଜେ ମନ୍ଦିରରେ,
ତୁମେ ଧୂପ ଦେଉଥାଅ ମୋ ଅନ୍ତର ତଳେ ।
ତୁମେ ମୋର ଓ ମୁଁ ତୁମର ହୋଇ,
ଆମେ ଦୁହେଁ ରହିଯିବା ଚିରଦିନ ପାଇଁ ।

## ଚିହ୍ନନ୍ତୁ ତୁମକୁ, ତୁମର ନାମରେ

● ମନୋଜ ସାହୁ
ତୃତୀୟ ବାର୍ଷିକ ରସାୟନ (ସମ୍ମାନ)

ହୃଦୟଟି ଖୋଜେ ତୁମକୁ
ଆତ୍ମାରେ
ଦେହର ଅସ୍ଥି ମଜ୍ଜାରେ
ମନ୍ଦିରର ପଥର ଦେହରେ
ପୁଣି କେବେ
ଶ୍ମଶାନର ଅଶରୀରୀ ମେଳେ ।
ମନଟି ଚାହେଁ ତୁମକୁ
ଏକାନ୍ତ ରୂପେ ନିଜର ଘରରେ,
ଖୋଜେ ପୁଣି
ଅନାବିଳ ଏକ ଶାଶ୍ୱତିକ ସଂଜ୍ଞା
ତୁମ ଆଉ ମୋ
ସମ୍ବନ୍ଧ ମଧ୍ୟରେ ।
ହେଲେ,
ଅଭିମାନୀ ହୃଦୟ ବା
ଅମାନିଆ ମନଟି
କାହିଁ ଟିକିଏ ବି ବୁଝେନା,
ମଳୟକୁ କି ମୁଠାଇ ହୁଏ
ମନୋରମ ଚଇତି ସନ୍ଧ୍ୟାରେ ।
ବା ଜ୍ୟୋସ୍ନାକୁ କି
ବାନ୍ଧିହୁଏ
ପୁନେଇ ରାତିରେ ।
ମୁଁ ଚାହେଁ
ତୁମେ ବହିଯାଅ,
ଗିରିପଟେ ବିଛାଇହୁଅ
ସ୍ୱଚ୍ଛତାର ପ୍ରତିରୂପ ନେଇ'
ପଦ୍ମ ପତ୍ରେ ଢଳ ଢଳ ହୁଅ
ଚଳ ଚଞ୍ଚଳ ସଲୀଳ ମଧ୍ୟରେ
ନିର୍ଲିପ୍ତତାର ସାକାର ପ୍ରତିମା ସାଜି ।

–:O:–

Digitized by PPRACHIN, SOA

# ଏକ ଅବକ୍ଷିପ୍ତ ଗତାନୁଗତିକତା

• ମିନତୀ ଶତପଥୀ
+୩ ତୃତୀୟ ବର୍ଷ ବିଜ୍ଞାନ

ପ୍ରତିଧ୍ୱନିର ତରଙ୍ଗମାଳାରୁ
ଅନ୍ଧପୁତୁଳି ବାନ୍ଧି ବି ଖୋଜନିଏ ମୁଁ
ପାଣି ଫୋଟକାର ମିଳେଇଯିବାର ଶବ୍ଦ ।
ଝଗ ପତ୍ରର ସବୁଜ ମରୁଭୂମି ମଧ୍ୟରେ
ସନ୍ତର୍ପଣରେ ଅଗ୍ରସର ହେଉଥିବା
ସରୁ ନଦୀର ଧାରଟି
ଥମକି ଅଟକି ଯାଏ ଅନ୍ୟଏକ
ସବୁଜ ସାଥୀର ସଂସର୍ଗରେ ।
ମିଠା ମିଠା ସ୍ନେହର ପ୍ରତିଦାନରେ
ରାତ୍ରିର ସ୍ୱପ୍ନସବୁ ଅଳୀକ ହୋଇଯାଏ
ଦିବସର ମୁକୁଳିତ ବାସ୍ତବତାରେ
ସ୍ୱାଭିମାନର ମର୍ମରିତ
ବାଣୀରେ ଝଙ୍କୃତ
ଭବପୂର୍ଣ୍ଣ ଜୀବନରେ ପରିବେଷ୍ଟିତ
ଜୀବନ ସବୁ ଗୋଟି ଗୋଟି ବୋଧହୁଏ
ଆତ୍ମହରା ହୋଇ ଗଣିବସନ୍ତି
ଅତିକ୍ରମ କରିଯାଉଥିବା
ପ୍ରତିଟି ଅବକ୍ଷିପ୍ତ ଗତାନୁଗତିକତାକୁ ।

# ପର ସେବାଲାଗି

• ସରୋଜ କୁମାର ସାହୁ
+୩ ଦ୍ୱିତୀୟ ବର୍ଷ କଳା

ହାତୀ ପରି ମୋତେ ଏତେ ବଡ ଜୀବ
ନ କରିଲ ପଛେ ନାହିଁ
ଛୋଟ ହେଲେ ହେଉ ମହୁ ମାଛିଟିଏ
କରି ଦିଅ ମତେ ସାଇଁ ।
ଫୁଲ ପାଖେ ଯାଇ ଗୁଣୁଗୁଣୁ ଗାଇ
ମହୁ ମୁଁ ଆଣିବି ମାଗି
କଷଣ ସହି ମୁଁ ସଜାଡ଼ି ରଖିବି
ପର ଉପକାର ଲାଗି ।
ଅତି ସୁନ୍ଦର ପଳାଶ କୁସୁମ
ନ କରିଲ ପଛେ ନାହିଁ
ଛୋଟ ହେଲେ ହେବି ଗଙ୍ଗଶିଉଳି
କରି ଦିଅ ମତେ ସାଇଁ ।
ସଞ୍ଜେ ଫୁଟି ମୁଁ ସକାଳେ ଝଡ଼ିବି
ମୁଖେ ଫୁଟାଇବି ହସ
ପରହିତ ଲାଗି ବିତରି ଯିବି ମୁଁ
ମୋର ସୁମଧୁର ବାସ ।
ଏତେ ଝକ୍‌ମକ ବିଜୁଳି ବତୀ ବା
ନ କରିଲ ପଛେ ନାହିଁ
ଛୋଟ ହେଲେ ହେଉ ମାଟି ଦ୍ୱୀପଟିଏ
କରି ଦିଅ ମୋତେ ସାଇଁ ।
ଛୋଟ ଘରକୁ ଆଲୁଅ କରିବି
ଟିକି ସଳିତା ମୋ ଜାଳି
ପର ସେବାରେ ମୋ କଟି ଯାଉ ଦିନ
ପର ଦୁଃଖ ନିତି ଗାଳି ।



Digitized by PPRACHIN, SOA




Tree Plantation by Mrs. Anita Agnihotri, Organise by N.S.S. unit,
Govt. College, Rourkela

## COLLEGE MAGAZINE EDITORIAL BOARD



Sitting (L to R) Dr (Mrs) B. Mishra, Prof. G. Das (Principal)
Prof. N.C. Nayak, Prof. (Smt) J.R. PatnaiK
Standing (L to R) Prof. D. Sahoo, Prof. K. Singh
Dr. Sricharan Mohanty & Prof Ms. A. Chakravorty

Digitized by PPRACHIN, SOA




Mrs. Anita Agnihotri, Collector Sundargarh
Addressing the Student in the inaugural Function of College Union.




(L to R) Sri B. Panda, (Secy. B.P.), Prof. P. N ·Mohaptra (V.P. Bigyan Parihsad), Prof. Dr. P. K. Dash, (Guest of honour), Prof. G. Das (Principal), Prof. Dr. A. Satapathy (Chief Guest), Prof. N. C. Nayak (V. P. Faculty Association and Sri A. Jha (Jt. Secy. F.A.)

Digitized by PPRACHIN, SOA

# गजल

● कुलजीत सिंह

लगी है आग, और हवा की तरह
उसको हर सू फैला रहा है कोई ।

जल रहा इन्सान दरख्तों की तरह
धुएं को रोशनी कह रहा है कोई ।

किसी ने गिराईं मुल्कों की सरहदें
दिल में दीवार उठा रहा है कोई ।

आवे–हयात के ही शहर में, इधर
कीमिया जहर की चला रहा है कोई ।

जंगल में फिर से चल बसना होगा
कि शहर में जंगल उगा रहा है कोई ।

डरा - सहमा - सा है शहर 'कुलजीत'
धर्म का दूत आ रहा है कोई ।

---



स्त्री को पराजित करना हो तो उसकी प्रशंसा करो
— वृन्दावन लाल वर्मा

Digitized by PPRACHIN, SOA

# विश्वास

लता कौशिक
+२, विज्ञान, द्वितीयवर्ष

मुझे तुम पर पूरा विश्वास था
तुम पर ही क्या
मुझे तो हर किसी पर विश्वास था।
मगर परिस्थितियों के चपेड़ों ने
मुझे भी औरों के रंग में रंग दिया
अविश्वास का शब्द सिखला दिया।
लेकिन फिर भी- कम - से - कम
तुम पर, पूरा विश्वास था
क्योंकि तुम्हीं ने तो मुझे, पहले—पहल
विश्वास के आवरण में लपेट कर
इसके महत्व का अहसास दिलाया था।
मैं तुम्हारी गलतियों पर
अविश्वास करती रही
तुम्हारी बुराइयों को जानकर भी
नजर—अंदाज करती रही
तुम धफीले शिखर पर
पहुंच गए
जहाँ से चट्टान कभी भी
खिसक सकती थी
तुम वहाँ से मुझे आवाज देकर
पुकारते रहे
मगर मैं
सुन नहीं पायी
क्योंकि मैं तो तुम्हारा दिया हुआ
विश्वास का दामन खुद पे लपेटे
सतरंगी सपनों में
खोयी हुई थी

Digitized by PPRACHIN, SOA

जिनमें तुम बने थे आदर्श
और हर राहगीर
तुम्हारे कदमों तले था ।
पता नहीं कब चट्टान खिसकी
और तुम हजारों कोस नीचे आकर
बिखर गए
मैं पत्थर बनी आश्चर्य से
तुम्हारे टुकड़ो को देखकर भी
अविश्वास करती रही
क्योंकि मुझे
तुम पर पूरा विश्वास था ।



आपका कोई भी काम महत्व हीन हो सकता है, किन्तु
महत्व पूर्ण तो यह है कि आप कुछ करें ।

—महात्मा गान्धी

Digitized by PPRACHIN, SOA

# दस्तक

सुमनान्जलि महान्ति
+३, विज्ञान, प्रथमवर्ष

गुफ्तगू हो रही थी गजलों में
जमने लगी थी महफिल
शाम थी ढलने लगी ।
बधाई थी तोहफे के फूलों में
तारीफ थी गजलों के बोलों में ।

आहट, आवाज, दस्तक की दी सुनाई मुझे
दरवाजा खोलकर जब देखा मैंने ।
सन्नाटा, अंधेरा था हर तरफ—किसी के
लौटते कदमों की आहट सुनाई देती थी ।
थी याद कोई जो दस्तक दे कर चली गई
जन्मदिन पे मुबारकबाद दे कर चली गई ।

लगी यह महफिल फीकी कितनी,
यह शाम थी सूनी कितनी ।
वो याद थी अपनी कितनी ।
जो गजल, नज्म न कह सकी
वह एक दस्तक कह गई,
एक दस्तक कह गई ।

—o—

अकेलापन ,उपेक्षा और अवांछनीयता की अनुभूति ही सबसे बड़ी दरिद्रता है ।

-मदर टेरेसा

Digitized by PPRACHIN, SOA

# रामजन्मभूमि – बाबरी मस्जिद – एक समस्या

● अनीता सहाय
+३ कला द्वितीय वर्ष

"मजहब नहीं सिखाता आपस में वैर रखना"

इकबाल की इन पंक्तियों को हमें याद रखना होगा। उनका यह कथन तभी सार्थक हो सकता है जब हमारे हृदय में आपसी द्वेष ईर्ष्या एवं जातीय भेद-भाव की भावना न हो। अभी बेकारी की समस्या हल भी नहीं हो पाई थी कि एक और गंभीर समस्या हमारे सामने खड़ी कर दी गई। और यह नई समस्या है 'अयोध्या नगरी की।' एक स्थल पर दो समुदाय के लोग मंदिर अथवा मस्जिद बनाने हेतु विवाद कर रहे है। हिन्दुओं का कहना है कि अयोध्या श्रीराम की जन्म भूमि है, यहाँ मंदिर का होना अनिवार्य है जबकि मुसलमानों का कहना है कि यहाँ मस्जिद पहले से थी और उसे क्षति पहुंचा कर मंदिर का निर्माण नहीं होना चाहिए। अब समस्या यह है कि किसी एक स्थल पर एक ही चीज की स्थापना हो सकती है मंदिर या मस्जिद ?

उक्त समस्या वर्तमान भारत की एक जटिल समस्या बन गई है। हमारी राजनीति भी इससे अछूती नहीं रह पाई है यह तो एक एक शतरंज के खेल की भाँति है जिसमें खिलाड़ी अपने मोहरे इस प्रकार रखता है कि विरोधी विचलित होता है। यहाँ पुराने मोहरे पिटते है और नए आते हैं। यही स्थिति हमारे देश की भी है। आज देश की इस महत्वपूर्ण समस्या के हल करने की बजाय कोई पार्टियाँ इससे भी किसी प्रकार अपना उल्लू सीधा करने में लगी हुई हैं। विभिन्न पार्टियाँ लोगों को भड़का रही है। जिससे देश में हिंसा की भावना को बल मिल रहा है। जगह जगह दंगे फसाद, खून खराबे हो रहे हैं। एक पार्टी का कहना है कि अयोध्या में मंदिर बनना चाहिए क्योंकि यह राम की जन्मभूमि है साथ ही दूसरी पार्टी का मत है चूंकि वहाँ मस्जिद मौजूद इसलिए वहाँ मस्जिद को तोड़कर मंदिर का निर्माण नहीं होना चाहिए।

यह कोई नहीं जानता कि अयोध्या में उसी स्थल पर 'श्रीराम' का जन्म हुआ था या नहीं ? परन्तु फिर भी यह वाद विवाद चल रही है। इसका समाधान होना चाहिए और यह तभी संभव है जबकि दोनों समुदाय के लोग एक साथ बैठ कर इस पर शांति पूर्वक विचार कर किसी एक नतीजे पर पहुंचें। लेकिन दुख इस बात की है कि अभी तक हमारे देशवासी इस छोटी सी बात को समझते हुए भी नासमझ बने बैठे हैं। आज देश की युवा पीढ़ी इससे वाकफ है और देश के इससे मुक्ति दिलाना चाहती है है।

अंत में मैं यह कहना चाहुंगी कि जिस

Digitized by PPRACHIN, SOA

प्रकार स्कूलों, कॉलेजों में हम सभी समुदाय के विद्यार्थी इकट्ठे पढ़ते हैं और आपस में मिल कर रहते हैं, उसी प्रकार हम सभी देशवासियों को आपस में मिल कर इस जटिल समस्या का हल ढूंढ़ना होगा। हमें यह नहीं भूलना चाहिए कि इस देश को आजादी भी हम सभी मजहब के लोगों ने मिल कर ही दिलाई है; अतः इस समस्या को भी मिल कर ही सुलझाना होगा जिससे कि फैसला एकतरफा न हो वरन् दोनों समुदायों को मान्य हो। ताकि देश में शांति बनी रहे और हम गर्व से स्वर में स्वर मिला कर गुनगुना सकें—

"सारे जहाँ से अच्छा, हिन्दोस्ताँ हमारा
हम बुलबुले हैं इसकी, यह गुलिस्तां हमारा।"



# अभिलाषा

मानव की पीड़ा समझ बुझ सब मिलजुल कर एकत्र रहें,
हो प्यार का सागर लहराती बिखरी खुशियाँ सर्वत्र रहें।

आपसी भेद का ज्ञान न हो दीखे न कहीं गहरी 'खाई,,
छोड़ धर्म और जाति सदा रह लें बनकर भाई भाई।

● संजय कुमार मिश्र

Digitized by PPRACHIN, SOA

# तुम मानव हो

● मनोज चतुर्वेदी
+ ३ कला, द्वितीय वर्ष

तुम '
अरे हाँ तुम ।
तुल अपने आप को मानब कहते हो
क्या तुमने मानव जैसा काम किया है ?
शहर जला कर दरिन्दो में अपना नाम किया है !
कितना बौना मनव, अज हो गया है,
सच्चाई की मौत के जश्न मे खो गया है
देखा नामुड कर निघर कितनी दूर आ गया है !
इतना नही निकाम्मा पौरूष कभी था, जितना आज हूआ है !
कभी हिसा से अशान्ति से किसी जासी का उध्धार हुआ है ?
गोता वही है, गुरुग्रन्थ वही है और वही है बाईवल - कूरान !
बदल गया नाम अगर तो क्या उपदेश वदल गये ?
तो तुम क्यों धर्म, जाति के नाम पर मानवता को बाँटे रहे हो—
और अपने को मानव कह रहे हो ।
तुम । अरे । हाँ तुम ..................



स्त्री का वल और साहस मान और मर्यादा पति तक है उसे
अपने पति के वल और पुरूषत्व का घमंड होता ह ।
— प्रेमचंद

Digitized by PPRACHIN, SOA

## मूलि गीत

● सरिता
+ ३ कला प्रथम वर्ष
हिन्दी सम्मान)

भीषण नर बलि के मध्य आज
जम्मू कश्मीर फिर तडप उटा
भारत माता का एक अंग
ला।कता है फिर से फडक उठा ।

छिः छिः यह कितनी कायरता
शिशुओ के सीने पर गोली
क्यों रक्त-सने हथों निष्ठुर,
तुह खेल रहे निर्मम होली ।

लाओ चन्दन अक्षत रोली
आओ उनकी करें आरती
शत् सत् नमन करें मृतकों को
जय कश्मीर, जल राष्ट्र भारती ।



## कबिता 'ढो'

● निला रोय
+ २ आर्टस दितीम वर्ष

जिंदेगी जब लेती है इम्तहा
छोड देते है सब हमें तन्हा ।

जिस पर सब कर देते हैं कुर्षा,
वक्त पडने पर वही पकढ लेता है गिरेवाँ ।

कैसी है मतलवी ये दुंनिया,
भरोसा करें किस पर पडता है सोचना ।

जो करते हैं उम्मीद किसीसे वो गँसाँ,
आज के दौर में कहलाते हैं नादां ।

उसाँ के जज्बात और दिल के अरमाँ,
उन्हें कुचल देती है पैरों तले दुनियां

ये धान्वा ये मतलब परस्ती का तूफाँ,
मुक्त होगा उनसे कब ये जहाँ ?



---

स्त्रियों को अलग करना उनका अपमान है ऐसा कहकर पुरूष
स्त्रियों के प्रति अन्याय ही करते हैं ।

— महात्मा गाँधी ।

Digitized by PPRACHIN, SOA

# प'जाब की आत्मकथा

● प्रसांत जसानी
+ विज्ञान व्दितीय वर्ष

सरसों और गेहुँ के खेतों में लहरता पंजाब,
भांगडे की धुन पर थिरकता पंजाब,
बैसाखी के मेलों में चहकता पंजाब,
वीर सेनानीयों की धरती पंजाब ।

आज वहाँ घूम रहा शैतान,
गलियाँ बन गइ शमशान,
लहराया ले काला तूफान,
कहाँ खो गया वह पंजाब ?

बच्चों के मुख से उड गई मुस्कान,
गाँव का चौपाल है सुनसान,
पंजाब—धरती वह पांच नदियों की,
भर रही आज खून मे हर नदी ।

हम कहें यह अज पक्के निश्चय से,
करेंगे आजाद पंजाब को दरिंदो से,
फिर वहाँ बहेगी पुरवैया,
फुलेगी सरसों थिरकेगा जोवन की धुन पे पंजाब ।

* .....

---

आपने दोषों को ढकने की चेष्टा करना
आपने पाँव में कुल्हाडी मारना हुं ।

—हजरत मुहम्मद

---

Digitized by PPRACHIN, SOA

## शिक्षा

● राजेश चौबे
+ ३ विज्ञान ( अंतिम वर्ष

शहर के नामी शिक्षक हरिहर बाबू की को देखने कुछ लोग आ रहे थे। लडका उनका प्रिय शिष्य रामेश्वर था जो कि पेशे से इन्जीनियर था। हरिहर बाबू को लगनेलगा कि शायद इसवार रिस्ता ठीक हो जाय। किन्तु उनका भ्रम उस सत्य टूट गया, जब लडके ने दहेज के बारे मे जनना चाहा। वह वही रामेश्वर था जिसका हाथ पकड कर उन्होने स्टेट पर लिखना सिखाया था। हरिहर बाबू को अवस्था रामेश्वर कहने लगा 'सर'। मुझे माफ करेंगे। मैं आपकी लडकी से विवाह नही कर सकता, क्योंकि मुझे पत्नी से ज्यादा दहेज की जरुरत है। मेरी दो बहनें है। मै अगर पैसा न लूँ तो मेरी बहनों की शादी कैसे होगी।"

हरिहर बाबू सोच रहे थे, जिन्दगी भर दूसरा को पढाने वाले, एक सरल सा पाठ नही पढ सके।

## BLOOD DONOR

1. Blood owners should be Blood doners.
2. Seventeen is very good year donate blood.
3. Blood Bank-Bulld it up you may need it some day
4. When life hangs in the balance your blood can save
5. Blood Donors love life.
6. Blood Donors save life
7. Give Blood, Blood is life.
8. Please be a Blood donor.
9. Blood is not to shed, But to save life
10. Your Blood can save a life.
11. Blood Donors have Hearts of God.

---

गम को शराब में डुबों देने के लिए जो लोग शराब पीते हैं उन्हें यह बता देना चाहिए कि गम को तैरना भी आता है।

— ऐन लैंडर्स

---

Digitized by PPRACHIN, SOA

# College Annual Day



Mr. Mangala Kissan, Hon'ble Minister of State, Forest and Environment addressing the Student.

# Annual Athaletic Meet - 1991



( L to R ) Sri A K. Garabadu B. N Samasi. Sri A. K. Parichha (chief guest) Prof. G. Das ( Principal ) Smt. Menati Mohapatra ( guest of honour ) and Dr. A. Sharma ( Vice-President )

Digitized by PPRACHIN, SOA

# Annual Athletic Meet - 1991



(L to R) Sri A. K. Garabadu (Secy.), Ms. Pranati Behera, Ms. Mamata Patnaik (both best women athlets) Mr. A. K. Parichha (Chief guest) Mrs. Minati Mohapatra (guest of honour).

# N. C. C. Cadets



(L to R) SUO - Suresh Chandra Beura
JUO - Prafulla Charan Nayak

Digitized by PPRACHIN, SOA

# Dreams Unknown

Aparna Belapurkar
+3 Ist year Botany (Hons)



The moments, the passion I adored
My dreams with them, high they soared.
Only to find a way
Unending at an abhor.

Not a path straight
Could give a break.
To the begoning morrow of my life,
A streak could change,
My world so strange.

Beautiful dreams
painstaking fruits,
shattered my state
from stem to roots.

Not a flicker of hope
Could give me the rope;
To the sun of success
To me it seems,
I, snared in my unknown dreams.

Something I could introspect,
Deep within me. it had slept,
Lingering for something out of stone;
Dreams' that were still unknown.

A ray of blessings would come,
Let false hopes stand alone,
Like a lunatic's fantasies,
Trying to make a palace out of throne,
Dreams, that were still Unknown.

–O–

Digitized by PPRACHIN, SOA

# My Teacher and I

Ms. Mona Mohanty
+3 Arts Final year.

When I don't attend my classes,
I am doing everything except studying.
When my teacher doesn't
he is tired.
When I try to explain something
I am guilty.
When he tries to explain,
he is teaching.
When I contradict
I am poking my nose in everything.
When he contradicts
he is intelligent.
When I take a long time
I am lazy.
When he takes a long time
he is perfect.
When I read novels
I am wasting my time.
When he reads
he is relaxing.
When I organise functions
I am neglecting my studies.
When he does so
he is talented.
When I chat with my friends
I am talkative,
When he does something like that
he is cooperating.
When I do well in exams,
he never appreciates.
When I do bad
he never forgets.



Digitized by PPRACHIN, SOA

# LONELINESS

Meera Sinha
+3 Arts 1st year
History (Hons)

I never knew
How to make "friends;"
Then you came.
I never knew
What "True Love" was-
Until you taught me.
I never knew
How itself to give up pride
Until I gave it up for you.
I never knew
What "Loneliness" was
Until you left me.
You are the best thing
That has ever happened
In my life;
"You are still remembered."

## JOKES BOX

1. " Daddy what do we mean by self respect "
Dear son, It is e virtue found only in unmarried persons.

2. A husband told his wife about a news he read in the newspaper. You know the municipal authorities have launched a drive to cage all the stray animals. The wife anxiously admonished him "you need not go out of house today."

Digitized by PPRACHIN, SOA

# All Your Life

✻ Susanta Ku Rout
+3 Science, 3rd year
Chemistry (Hons)



Some cheerful faces,
　　You recall all your life,
Some tender thoughts
　　You cherish all your life,
Some loving memories
　　You nurture all your life,
Some dear friends
　　You love all your life,
Some childhood follies
　　You wonder at all your life,
Some strange coincidences
　　You marvel at all your life,
Some hilarious anecdotes
　　You laugh at all your life,
Some humane emotions
　　You are sentimental about all
　　　　your life,
Some gross injustices
　　You revolt at all your life,
Some subtle controversies
　　You cannot solve all your life,
Some stimulating thoughts
　　You are enraptured by all your life,
Some good traits
　　You inculcate all your life,
Some words of wisdom
　　You imbibe all your life,
Surely the sum of all these somes
　　Makes all your life worth while !!

Digitized by PPRACHIN, SOA

# The Magic of Alphabet

● Rama Krishna Sahu
+3 Arts IIIrd year
History Hons

Always trying to be cheerful
Brings us joy really plentiful,
Clouds may come on our way,
Do let us face them, not run away;
Ever grateful let us try to be
Friends to all, loving and true,
God' our father, loves us all
Heaven our reward for big and small
Indeed we are blessed on this earth
Just because of our human worth,
Kindness, gentleness and happiness,
Let our lives rule, never weakness;
Many a time we get discouraged
Never yielding, let us try to be encouraged
Offering hand to those in need
Powerful our lives be in word and deed
Quit all evil, makeup your mind
Remember at death we our end find
Strive to sweeten and strengthen
Try to brighten. and joys do lengthen
Upon our hearts let us engrave
Very good ideals and be brave
What if others make us suffer?
X' mas joys let us to them offer.
Your life is as you make it, I bet!
Zeal for your welfare built this ALPHABET...

Digitized by PPRACHIN, SOA

# GOODBYE FRIEND

Anita Sahai
+3 Arts 2nd year

It's really hard to say gordbye
to good friends such as you.
But since you say you're leaving,
there's not much else to do;
Except to pray God's blessings
as you travel along life's way,
And to wish you good health and
happiness.........increasing day-by day
So take these blessings with you
and be sure to keep in touch.........
Take care of yourself—
be good to yourself—
and remember,
You'll be missed so much !

...O...

## JOKES BOX

Kabita Mukherjee
+3 1st year ( Eco. Hons )

*A woman took her dog to a vet and requested him to cut off its tail. "Why do you want its tail to be cut off ?" asked the vet. " Well\ my mother-in-law is coming tomorrow and I want nothing in the house to suggest she is welcome."*

Digitized by PPRACHIN, SOA

# DOWRY SYSTEM : IN INDIA

## SOME PROBLEMS AND PROSPECTS

● Ajita Priyadarshini
+3, 1st year History (Hons)

> *Any young man who takes dowry a condition for marriage discredits his education and his country and dishonours.........womanhood. Youngmen who soil their fingers with such ill-gotten gold should be excommunicated from society* - 'GANDHIJI.'

The term dowry signifies terror to most persons having daughters. Dowry does not only refer to cash and material goods given to a girl at the time of her marriage. The number of people in the marriage party ( *barat* ), the number and quality of meals, presents to the baratis etc, are included in dowry. In most parts of India marriage without dowry has become almost unthinkable. Dowry was initially an institution where in the parents of the girl gave her costly gifts and presents out of their own will at the time of her marriage. But today it is considered not as '*dan*, (gift) but a '*haq*' ( right ) of a boy and his parents to demand dowry from the girl. Parents of a boy of marriageable age, and with the qualifications that the parents of a girl are looking for demand a dowry according to what they think is the value of their son.

The origin of dowry system is not exactly tracable. However, we find that from time immemorial the parents of the bride presenting the bride and the bride groom with certain essential items like ornaments, furniture, utensils etc. required for setting up their home. Perhaps this might have been one of the reasons for the origin of dowry. But its magnitude was never that wide as it is now. However, from the *Shastras* and *Puranas*, we find the concept of *Kanyadan* which is always followed by *Dakshina*. Perhaps this might be the beginning of the dowry system in India. In the *Atharva-Veda* and *Rig Veda* we find instances of royal brides bringing worthy presents. In *Maha bharata* also we find Draupadi, Subhadra and Uttara were given valuable presents at the time of marriage But this can be hardly called as dowry as they were voluntarily given by the brides parents after the marriage. Futher the *Smritis* also do not mention dowry Thus it seems that the dowry as we take today was generally unknown to the people of olden days. This custom emerged only in the medieval period where the Rajput princes, Thikanadars and Jagirdars gave away gifts to their daughters

Digitized by PPRACHIN, SOA

at the time of marriage to exhibit their prosperity and superior status. In course of time this custom filtered down from the rich Rajputs and other higher born castes to lower section.

Dowry has also become a symbol of prestige for both dowry givers and dowry takers. It is considered a matter of dignity to give more dowry than one's kinsmen, caste fellow and others. Parents of a boy boast that their son fetched a very high amount of dowry including a car, a plot of land or a flat, a video and all other luxury and household goods. Most often we hear about the top politicians and the so called elite citizens of our country boasting about the dowry fetched by their children and about the extravagant arrangements made by them for the marriage. These people instead of being socially boycotted are given top publicity.

Dowry varies trom caste to caste and from region to region. It varies depending on urban rural family background. It is a socio-structural phenomenon. Variation in social structure in terms of caste, class, ethnicity, religion, region, region and culture result in observable variation of the system. The growth of education, salaried employment, migration to cities and towns and scientific and industrial advancements not only increased the incidence of dowry but also changed its dimension and magnitude A boy with good education and employment preferably staying in towns and cities becomes much sought after as a match for a girl.

Dowry is given not only in terms of cash but in terms of material goods. Whatever new product has come to the market such as scootor, car, radio, refriegerator, household goods, electrical appliances, clothes, ornaments, furniture etc has become parts of dowry. If parents with moderate economic standing cannot meet dowry demands. their daughters remain unmarried, if they manage to give a dowry may get into heavy debt

Demands for more dowry has become a source of conflict between the families of the boy and the girl. When the demands are not met, brides are harassed, tortured burnt or they are forced to commit suiside. Greed of money and wealth has taken people to the extent of committing inhuman acts like burning the brides alive. We hear and read in newspapers almost every day abaut dowry deaths, where women are being burnt to death. For, instance a all time high of 162 cases of burning of women were reported between April 1st 1983 and June 30th 1983. This problem is experienced in all sections of society, but particularly in the educated middle classes engaged in jobs and trade and commerce. The bride giver always remains socially inferior to the bride taker. He has to give presents to the bride throughout his life and on that depands economic status. Some parents give dowry in the name of their daughters, fearing its use by the parents of the groom. Such instances have also been the cause of great discontent among the bride takens.



Digitized by PPRACHIN, SOA

